ପ୍ରକାଶକ :

**ଶ୍ରୀ ବିକ୍ରମକେଶରୀ ବର୍ମା**

ମଉଦା, କଟକ

ପ୍ରଥମ ସଂସ୍କରଣ :

ଜୁନ୍, ୧୯୬୯

ମୁଦ୍ରଣ :

**ଅର୍ଚ୍ଚନା ପ୍ରେସ**

ଗଙ୍ଗାମନ୍ଦର, କଟକ-୧

ମୂଲ୍ୟ ଟ ୨-୦୦

# ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ 'କଳିଙ୍ଗ' ସମ୍ପାଦକ
# ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ଅଭିମତ

ଅସମ୍ବନ୍ଧ ଭାବନାର ଲଘୁଚପଳତା ରମ୍ୟରଚନା ନୁହେଁ। ଶୁଷ୍କ ରସହୀନ ତଥ୍ୟର ଗୁରୁ ଗମ୍ଭୀର ସମାହାରକୁ ମଧ୍ୟ ପ୍ରବନ୍ଧ କୁହାଯାଇ ନ ପାରେ।

ରମ୍ୟରଚନା ପାଇଁ ଯେପରି ମାନସିକ ବୈଦଗ୍ଧ ଆବଶ୍ୟକ, ପ୍ରବନ୍ଧ ପାଇଁ ସେହିପରି ପ୍ରୟୋଜନ ବିଭିନ୍ନ ବିଷୟରେ ଗଭୀର ମନନ, ଚିନ୍ତନ ଓ ଅଧ୍ୟୟନ। ବୈଦଗ୍ଧର ସ୍ତରରେ ଉଭୟ ପ୍ରବନ୍ଧ ଓ ରମ୍ୟରଚନା ଯେପରି ସମନ୍ୱିତ ହୋଇଥାଏ। ଆକଣ୍ଡି, ଷ୍ଟିଭେନ୍‌ସନ, ପୋ, ଲମ୍ବ୍, ଆଡିସନ୍, ଷ୍ଟିଲ ଓ ଥୁରୋ ପ୍ରମୁଖଙ୍କ ପ୍ରବନ୍ଧ ସାହିତ୍ୟରୁ ତାହାର ବହୁ ଉଦାହରଣ ମିଳିବ। କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ସମଗ୍ର ଭାରତୀୟ ସାହିତ୍ୟରେ ମଧ୍ୟ ଏ ପ୍ରକାର ଉତ୍ତୋତ୍ତୀର୍ଣ୍ଣ ପ୍ରବନ୍ଧର ଅଭାବ ପରିଲକ୍ଷିତ ହୋଇଥାଏ।

ଏ ଅଭାବଟି ଓଡ଼ିଆ ସାହିତ୍ୟରେ ବିଶେଷ ଭାବରେ ପରିସ୍ଫୁଟ। ଶ୍ରୀମାନ୍ ବିକ୍ରମକେଶରୀ ବର୍ମାଙ୍କର ଏହି କେତେଗୋଟି ରମ୍ୟରଚନା ଓ ପ୍ରବନ୍ଧ କେତେକାଂଶରେ ସେଇ ଦୈନ୍ୟ ମୋଚନ କରିବ, ସନ୍ଦେହ ନାହିଁ। ଏଥିରେ ସନ୍ନିବିଷ୍ଟ ସାହିତ୍ୟିକ ପ୍ରବନ୍ଧଗୁଡ଼ିକ ଭାବନାଦ୍ୟୋତକ, ରାଜନୈତିକ ପ୍ରବନ୍ଧଗୁଡ଼ିକ ମଧ୍ୟ ସମୟୋପଯୋଗୀ। ଏହି ସଂକଳନଟି ପାଠକସମାଜରେ ଅଭିନନ୍ଦିତ ହେବ ବୋଲି ଆଶା ପୋଷଣ କରେ।

ଶିବାଣୀ
କଟକ
୭ ଜୁନ୍ ୧୯୬୯

ସୁରେନ୍ଦ୍ର ମହାନ୍ତି

# ସୂଚୀ

# ଗଜପତି ଗଙ୍ଗେଶ୍ୱରଙ୍କ ସଂପେଂରେ

ମୋ'ର ନାମ ଗଙ୍ଗେଶ୍ୱର । ଏ ନାମଟା ଶୁଣୁ ଶୁଣୁ ଆପଣମାନେ ନାସାକୁଞ୍ଚନ କରିବେଣି । ମୁଁ ଏ ରାଜ୍ୟସାରା ନିନ୍ଦାର ପାତ୍ର । ମୋ ଯୋଗୁ ଓଡ଼ିଆ ଜାତି କୁଆଡ଼େ କଳଙ୍କିତ ହୋଇଛି ବୋଲି ଲୋକେ କହନ୍ତି । ମୁଁ ଓଡ଼ିଶାର ରାଜସିଂହାସନକୁ ଅପବିତ୍ର କରିଛି ବୋଲି ମୋତେ ସମସ୍ତେ ଘୃଣା କରନ୍ତି । ମୁଁ ପାଷାଣ୍ଡ, ଅଧର୍ମୀ, ବ୍ୟଭିଚାରୀ—ସବୁ କିଛି । ମୋର ବିବାହିତା ପତ୍ନୀମୁଖରେ ମୋତେ ଗାଳି ଦିଆଯାଇଛି—

"ହେ ବିଧାତା ! ମର୍ତ୍ତ୍ୟ- ଧାମେ ଜନ୍ମ ପୁଣି
ଲଭନ୍ତି ଏଡ଼େ ପାଷଣ୍ଡି
ଧର୍ମରକ୍ଷା ଲାଗି ଏ ପୁଣି ଧରନ୍ତି
ଭୂମଣ୍ଡଳେ ରାଜଦଣ୍ଡ !"

ସ୍ୱାମୀ ସ୍ତ୍ରୀର ଆରାଧ୍ୟ ଦେବତା, ସ୍ୱାମୀ ହିଁ ହିନ୍ଦୁ ନାରୀର ଗତି-ମୁକ୍ତିଦାତା । ସାବିତ୍ରୀ-ସତ୍ୟବାନଙ୍କ କାହାଣୀ ଏ ଦେଶରେ କାହାକୁ ଅଜଣା ନାହିଁ । ଇଏ ସେହି ପବିତ୍ର ଭୂମି । ସେହି ଦେଶର ନାରୀ ତା'ର ସ୍ୱାମୀକୁ ତିରସ୍କାର କରିଛି । କେବଳ ସେତିକି ନୁହେଁ, ସ୍ୱାମୀ ଗଳାରେ ମଧ୍ୟ 'କଟାର' ଚଳାଇଛି । ମୋ ନାଁରେ ନାନା ଜଘନ୍ୟ

କଥା କୁହାଯାଉଛି । ମୋର ଅଳଅଳୀ ଝିଅ… । ନା ନା, ସେ କଥା କହି ପାରିବିନି । କେଉଁ ବାପ ଏହା ତୁଣ୍ଡରେ ଧରିବ ?

ମୋ ବିଷୟରେ ଏତେଦିନ ଧରି ଉତ୍କଳ ଭୂଖଣ୍ଡରେ ଏତେ କଥା କୁହାଯାଉଛି, ତାହାର ସୀମା ନାହିଁ । ମୋତେ ନିନ୍ଦା କରି ଘରେ ଘରେ କବିତା ବୋଲାଯାଉଛି ।

ମୁଁ ଥିଲି ଉତ୍କଳର ପ୍ରତାପଶାଳୀ ସମ୍ରାଟ ଥିଲି । ମୋ ନାମ ଶୁଣିଲେ ଶତ୍ରୁର ହୃତ୍‌କମ୍ପ ହେଉଥିଲା । ବାହୁବଳରେ ଅନେକ ରାଜ୍ୟ ଜୟ କରି ଉତ୍କଳର ଭୌଗୋଳିକ ସୀମା ବୃଦ୍ଧି କରାଇଥିଲି । ମୁଁ ଯୁଦ୍ଧରେ କେବେ ପଛଘୁଞ୍ଚା ଦେଇନି । ମୋର ପୂର୍ବବର୍ତ୍ତୀ ଗଜପତିମାନଙ୍କ ଅପେକ୍ଷା ମୁଁ କୌଣସି ଗୁଣରେ ନ୍ୟୂନ ନ ଥିଲି ବୋଲି ମୋର ବିଶ୍ୱାସ । ମୋ ପରି ଯୋଦ୍ଧା ତତ୍କାଳୀନ ଭାରତରେ ଖୁବ ଅଳ୍ପ ଥିଲେ । ଉତ୍କଳର ଗୌରବ ବୃଦ୍ଧି କରିବାରେ ମୁଁ କେବେହେଲେ ଅବହେଳା କରିନି ।

ଏସବୁ ସତ୍ତ୍ୱେ ମୋର ନିନ୍ଦାଗାନ କରାଯାଉଛି । ମୋର ବୀରତ୍ୱ, ରାଜ୍ୟଜୟ, ଦେଶଶାସନ ଓ ରାଜ୍ୟର ଗୌରବ ବର୍ଦ୍ଧନ ଆଦି ବିଷୟରେ କେହି ଆଲୋଚନା କରୁ ନାହାନ୍ତି ବା ପଦେ ପ୍ରଶଂସା ବାଣୀ ଶୁଣାଉ ନାହାନ୍ତି ।

ଏ ସବୁର ମୂଳ କାରଣ ପିଠାଇ କହୁଛି । ଆପଣମାନେ ଟିକିଏ ଧୈର୍ଯ୍ୟ ଧରି ଶୁଣନ୍ତୁ । ରାଧାନାଥ ରାୟ ବଡ଼ କବି ଭାବରେ ଉତ୍କଳରେ ପ୍ରସିଦ୍ଧି ଲାଭ କରିଥିବା ଏବେ ମୁଁ ଶୁଣୁଛି । ସେ ମହାପୁରୁଷଙ୍କୁ ମୁଁ କେବେ ଦେଖିବାର ସୁଯୋଗ ପାଇନି । ମୁଁ ଇହଧାମ ତ୍ୟାଗ କରିବାର ବହୁ ଶତାବ୍ଦୀ ପରେ ସେ ଜନ୍ମଗ୍ରହଣ କରିଥିଲେ ।

ସେ ମୋ ସମ୍ବନ୍ଧରେ ଏକ କାବ୍ୟ ରଚନା କରିଛନ୍ତି । କାବ୍ୟଟିର ନାମ 'ପାର୍ବଣ' । ପାର୍ବଣ ମୋର ସ୍ତ୍ରୀ ଏବଂ କୌଶଲ୍ୟା ମୋର କନ୍ୟା ଥିଲା ବୋଲି କାବ୍ୟରେ ବର୍ଣ୍ଣନା କରାଯାଇଛି । ମୁଁ କୁଆଡ଼େ କୌଶଲ୍ୟାକୁ ଅତି ଆଦର କରୁଥିଲି । ବାପ ଝିଅକୁ ଆଦର ଓ ସ୍ନେହ କରିବା କିଛି ଭୁଲ କଥା ନୁହେଁ ।

ମୁଁ ରତ୍ନପୁର ଅବରୋଧ କଲି । ମୁଁ ବୀର । ଯୁଦ୍ଧ ମୋର ଧର୍ମ । ଯୁଦ୍ଧ ଦ୍ୱାରା ହିଁ ମୁଁ ଉତ୍କଳର ଗୌରବ ବୃଦ୍ଧି କରାଇଛି । ଯୁଦ୍ଧ ସମୟରେ ମୁଁ କୁଆଡ଼େ ଝିଅ କୌଶଲ୍ୟାକୁ ରଣାଙ୍ଗନକୁ ସାଙ୍ଗରେ ନେଲି । ଏହା ଯଦି ସତ୍ୟ ବୋଲି ଧରି ନିଆଯାଏ, ତେବେ ବି ମୋର ଭୁଲ କିଛି ଅଛି କି ?

ଏତିକି ବର୍ଣ୍ଣନା କରିବା ପରେ କବିଙ୍କୁ ପାଶ୍ଚାତ୍ୟ-ଜ୍ଞାନପୋକ ଦଂଶନ କଲା । ସେ ଇଂରେଜୀ ଭାଷାରେ ପଣ୍ଡିତ ଥିଲେ, ବିଶିଷ୍ଟ ଇଂରେଜୀ କବି ସେକ୍ସପିଅରଙ୍କ 'ହାମଲେଟ୍' ନାଟକ ପଢ଼ିଥିଲେ । ବିଖ୍ୟାତ ନାଟ୍ୟକାର ଏସ୍କାଇଲସ୍‌ଙ୍କର 'ଆଗ୍‌ମେନନ' ନାଟକ ପାଖରେ ଥୋଇଥିଲେ ବୋଧେ । ରାଧାନାଥବାବୁ ପୁସ୍ତକଦ୍ୱୟକୁ ତନ୍ନ ତନ୍ନ କରି ପଢ଼ୁଥିଲେ ।

ଏଠାରେ ଆଗ୍‌ମେନନ ନାଟକର ବିଷୟବସ୍ତୁ ସୂଚାଇ ଦିଏ । ବିଖ୍ୟାତ ଗ୍ରୀକ୍ କବି ହୋମରଙ୍କ ବର୍ଣ୍ଣିତ ଟ୍ରୟଯୁଦ୍ଧ କଥା ଆପଣମାନେ ଜାଣିଥିବେ । ରାଜା ଆଗ୍‌ମେନନ ବିରାଟ ସୈନ୍ୟ-ବାହିନୀ ସହ ଜଳପଥରେ ଟ୍ରୟ ଅଭିମୁଖରେ ଯାତ୍ରା କରୁଥାନ୍ତି । ହଠାତ୍ ଝଡ଼ବାତ୍ୟା ମାଡ଼ି ଆସିଲା । ଜ୍ୟୋତିର୍ବିଦ ଗଣନା କରି କହିଲେ—ଡାଏନା ଦେବୀ ଅସନ୍ତୁଷ୍ଟ ହେବାରୁ ବିପଦର ସମ୍ମୁଖୀନ ହେବାକୁ ପଡ଼ୁଛି ।

"ଏହାର ଉପାୟ ?" ରାଜା ଆଗ୍‌ମେନନ ଆତଙ୍କିତ ହୋଇ ପ୍ରଶ୍ନ କଲେ ।

"ରାଜକନ୍ୟାର ବଳି ପ୍ରଦାନରେ ଦେବୀ କେବଳ ସନ୍ତୁଷ୍ଟ ହୋଇପାରନ୍ତି ।" ଜ୍ୟୋତିର୍ବିଦ ହାତ ଯୋଡ଼ି ମହାରାଜଙ୍କ ସମ୍ମୁଖରେ ଜଣାଇଥିଲେ ।

ସାଗରଗର୍ଭରେ ରାଜକନ୍ୟା ମିଳିବ କେଉଁଠି ? ଶେଷରେ ସାଙ୍ଗରେ ଯାଉଥିବା ରାଜଜେମାଙ୍କୁ ବଳି ଦିଆଯାଇ ଦେବୀଙ୍କୁ ସନ୍ତୁଷ୍ଟ କରାଯାଇଥିଲା ।

ରାଣୀ କ୍ଲାଇଟେମେନେଷ୍ଟ୍ରା ଏ ସମ୍ବାଦ ପାଇ ଅତିଶୟ ବିଚଳିତା ହୋଇପଡ଼ିଲେ । ରାଜାଙ୍କ ପ୍ରତି ତାଙ୍କର ପ୍ରବଳ ଘୃଣା ଜାତ ହେଲା । ପିତା ହୋଇ ଯେ ସ୍ୱ-କନ୍ୟାକୁ ବଧ କରି ପାରିଲା ସେ କି ପତି ହେବାର ଯୋଗ୍ୟ ? ରାଣୀ ଉପପତି ଗ୍ରହଣ କରି ସେହି ଉପପତି ଦ୍ୱାରା ପରବର୍ତ୍ତୀ କାଳରେ ରାଜା ଆଗ୍‌ମେନନଙ୍କ ହତ୍ୟା କରାଇଲେ ।

ହାମଲେଟ ନାଟକରେ ତଦ୍ରୂପ ରାଣୀ ଗାର୍ଟ୍ରୁଡ଼ ଦେବର ପ୍ରେମରେ ପଡ଼ି ସ୍ୱାମୀହତ୍ୟା କରିଛନ୍ତି ।

ଏହି ଦୁଇ ମହାକବିଙ୍କ ରଚିତ ଦୁଇ ନାଟକର ବିଷୟବସ୍ତୁକୁ ଗ୍ରହଣ କରି ଓଡ଼ିଆ ସାହିତ୍ୟରେ ଏ ଅଭିନବ କାବ୍ୟ ସୃଷ୍ଟି କରିବା ପାଇଁ ରାଧାନାଥ ଚିନ୍ତା କରିବାକୁ ଲାଗିଲେ ।

ଏହି ସମୟରେ ପ୍ରଖ୍ୟାତ ଗ୍ରୀକ୍ କବି ସୋଫୋକ୍ଲିସ୍‌ଙ୍କ 'ଇଡିପସ୍' କାବ୍ୟର କଥାବସ୍ତୁ କବିଙ୍କର ମନେ ପଡ଼ିଗଲା ।

'ଇଡିପସ' କାବ୍ୟରେ ମାତାପୁତ୍ର ମଧ୍ୟରେ ଅବୈଧ ପାପ-ପ୍ରଣୟର ବର୍ଣ୍ଣନା ଦିଆଯାଇଛି ।

ଏ ସମସ୍ତ ଘଟଣାକୁ କେନ୍ଦ୍ର କରି ଅପୂର୍ବ କାବ୍ୟ ସୃଷ୍ଟି ହେଲା । 'ଇଡିପସ୍' କାବ୍ୟର ମାତାପୁତ୍ରର ଅବୈଧ ପ୍ରେମକୁ ପିତା ଓ କନ୍ୟାର ପ୍ରେମରୂପେ ଚିତ୍ର କରାଯାଇ ମୋ ଠାରେ ଯୋଡ଼ି ଦିଆଗଲା । ଆଗାମେମନନଙ୍କ କନ୍ୟାବଧ ଘଟଣା ଅବଲମ୍ବନରେ ମୋତେ କନ୍ୟା-ବଧ ଦୋଷରେ ଦୋଷୀ କରାଇଲେ । ଶେଷରେ ରାଣୀ କ୍ଲାଇଟେମେନେଷ୍ଟ୍ରା ରାଜା ଆଗମେମନନଙ୍କୁ ହତ୍ୟା କରାଇବା ପରି ରାଣୀ ପାର୍ବତୀ ମୋ ଗଳାରେ କଟାରି ଚଳାଇବାର ଚିତ୍ର ଆଙ୍କି ଦିଆଗଲା ।

ଏଥିରେ ମୋର ଦୋଷ କେଉଁଠି ? ମୋ ଚରିତ୍ର କାହିଁକି ଏପରି ଅବଗୁର କରି ମୋତେ ଜନସମାଜରେ ନିନ୍ଦିତ କରାଇଲେ, ତାହା ମୁଁ ବୁଝି ପାରୁନି । ଉତ୍କଳ ରାଜବଂଶରେ କଳଙ୍କ ଲେପି ସେ କି ଗୌରବର ଅଧିକାରୀ ହେଲେ, ତାହା ମୁଁ ଜାଣେନା । ମୋ ପାଇଁ ମୁଁ ଆଦୌ ଦୁଃଖିତ ନୁହେଁ । ମୁଁ ଯଦି ଉତ୍କଳର ପବିତ୍ର ରାଜବଂଶରେ ଜନ୍ମ ନ ହୋଇ ସାଧାରଣ ଲୋକ ହୋଇଥାନ୍ତି, ତେବେ ଏଥିପାଇଁ ଆଦୌ ଦୁଃଖିତ ହୁଅନ୍ତିନି ।

ସୁଦୂର ଗ୍ରୀସ୍ ଓ ଇଂଲଣ୍ଡ ଦେଶରୁ ଆମଦାନି ହୋଇଥିବା ଏହି ବିଷୟବସ୍ତୁରେ ଉତ୍କଳୀୟ ଛାପ ମାରିବା ପାଇଁ କେତେକ କିମ୍ବଦନ୍ତୀକୁ ଏଥିରେ ଯୋଡ଼ି ଦିଆଗଲା ।

ଇତିହାସ ପ୍ରସିଦ୍ଧ ଧଉଳି ପାହାଡ଼ ନିକଟରେ ଥିବା କୌଶଲ୍ୟା-ଗଙ୍ଗ ପୁଷ୍କରିଣୀ ସହ ବିଷୟବସ୍ତୁକୁ ଯୋଡ଼ି ଦିଆଯାଇ ଐତିହାସିକ ବିଷୟ ରୂପେ ଅବତାରଣା କରାଯାଇଛି । ରାଜା ଗଙ୍ଗେଶ୍ୱର କନ୍ୟାସହ ପାପପ୍ରଣୟରେ ମଗ୍ନ ରହି ପରେ ପ୍ରାୟଶ୍ଚିତ୍ତ ପାଇଁ ଏହି ବିରାଟ ପୁଷ୍କରିଣୀ ଖନନ କରିଥିଲେ ବୋଲି ଏକ ମନଗଢ଼ା କିମ୍ବଦନ୍ତୀ ସୃଷ୍ଟି କରାଯାଇଛି ।

ଏଭଳି ଅସାର କିମ୍ବଦନ୍ତୀ ସୃଷ୍ଟି କରିବାରେ ରାଧାନାଥଙ୍କୁ କି ସନ୍ତୋଷ ମିଳିଛି ? ମୋ କଥା ଆପଣମାନଙ୍କର ବିଶ୍ୱାସ ଆସୁ ନ ଥିବ। କାରଣ ମୋ ବିରୁଦ୍ଧରେ ଆପଣମାନଙ୍କ ମନରେ ବଦ୍ଧମୂଳ ଧାରଣା ସୃଷ୍ଟି କରି ଦିଆଯାଇଛି।

ଆପଣମାନେ ଭୁବନେଶ୍ୱରର କେଦାରଗୌରୀ ପୀଠ ଦେଖିଥିବେ । ଆଜି ବି ପଣ୍ଡା ଦର୍ଶକଙ୍କୁ ଦେଖାଇ ଦେଉଛି—ଏଇଠି ଗୌରୀ ଲୁଚିଥିଲା—ଏଇଠି ବ୍ୟାଘ୍ର ହାବୁଡ଼ରେ ପଡ଼ିଲେ ଇତ୍ୟାଦି—ଇତ୍ୟାଦି।

ଗ୍ରୀକ୍ କବି ଓଭିଡଙ୍କର ନାୟିକା ଗୌରୀ ରୂପରେ ଓଡ଼ିଶା ଭୂଇଁରେ ଏତେ ଲୀଳାଖେଳା କରିଗଲା—ଏହା କେବଳ ରାଧାନାଥ ଲେଖନୀର ବିଚିତ୍ରତା। ଗ୍ରୀକ୍ ନାୟିକା ଓଡ଼ିଶା ଦେବପୀଠରେ ଆସ୍ଥାନ ମାଡ଼ି ବସିଛି। ପଣ୍ଡିତ ନୀଳକଣ୍ଠ ଏହାକୁ ଲକ୍ଷ୍ୟ କରି ଯଥାର୍ଥରେ ଗାଇଛନ୍ତି—

"କବିଙ୍କ କେଦାରଗଉରୀ ଆସି ଯବନ ଦେଶୁ
ନାଚିପିବ ଥରେ ସ୍ୱପନେ ପୂର୍ବ ଅଭ୍ୟାସ ବଶୁଁ।"

ଚନ୍ଦ୍ରଭାଗାର କୋଣାର୍କ ମନ୍ଦିର ପୃଥିବୀପ୍ରସିଦ୍ଧ। ଚନ୍ଦ୍ରଭାଗା ମଧ୍ୟ ସୂର୍ଯ୍ୟଙ୍କର ପୀଠସ୍ଥଳୀ ରୂପେ ପୁରାଣପ୍ରସିଦ୍ଧ। ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଏଠାରେ ସୂର୍ଯ୍ୟଙ୍କୁ ଉପାସନା କରି କୁଷ୍ଠରୋଗରୁ ମୁକ୍ତିଲଭ କରିଥିବା ପୁରାଣରୁ ଜଣାଯାଏ। ଏହି ପବିତ୍ର ପୀଠକୁ କେନ୍ଦ୍ର କରି ରାଧାନାଥଙ୍କ ଚନ୍ଦ୍ରଭାଗା କାବ୍ୟରେ ଯେଉଁ ବିଷୟବସ୍ତୁର ଅବତାରଣା କରାଯାଇଛି, ତାହା ପୁରାଣରେ ଅଛି ?

ତାହା ଅଛି ଗ୍ରୀକ୍ ପୁରାଣରେ। ଆପୋଲୋ ଓ ଡାଫ୍ନୀଙ୍କ ପ୍ରେମକାହାଣୀକୁ ଅବଲମ୍ବନ କରି ରାଧାନାଥ 'ଚନ୍ଦ୍ରଭାଗା' କାବ୍ୟ

ସୃଷ୍ଟି କଲେ । ନୀଳକଣ୍ଠ ଏହାଙ୍କୁ ଲକ୍ଷ୍ୟ କରି ଲେଖିଛନ୍ତି—

"ଚନ୍ଦ୍ରହାସେ ବାଳା ଆସିବେ ଚନ୍ଦ୍ରଭାଗା ସୁନ୍ଦରୀ
ଯବନାମୀ କବି ନାୟିକା ନାଟିତକ ଆଚରି ।"

ସେହିପରି ରାଧାନାଥଙ୍କ ଯଯାତି ଉତ୍କଳର ବୀର ଯଯାତି ନୁହଁନ୍ତି । ତାଙ୍କ ନନ୍ଦିକେଶ୍ୱରୀ ଉତ୍କଳର ରାଜଜେମା ନୁହଁନ୍ତି ।

"ସୁବର୍ଣ୍ଣଦୁହିତା ବରିବେ ଗ୍ରୈରଗଙ୍ଗ ରାଜନ
କେରଳ ମହଲେ ଉତ୍କଳ ଭେଷା ଶୁଭିବ ପୁଣି ।
ଘରି ଗ୍ରୁଡ଼ି କମ୍ପା ମିବେ ହେ ବୀରବାଳା ନନ୍ଦିକା
ସହକାର ଦ୍ରୁମ ଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା ।"

ନୀଳକଣ୍ଠଙ୍କ ଉପରୋକ୍ତ ପଦ୍ୟାବଳୀ ପ୍ରତି ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଯଯାତି, ଚନ୍ଦ୍ରଭାଗା ବା କେଦାର-ଗୌରୀ କେହି ଉତ୍କଳୀୟ ଚରିତ୍ର ନୁହଁନ୍ତି । ସେହିପରି 'ପାର୍ବତୀ'ରେ ବର୍ଣ୍ଣିତ ଗଙ୍ଗେଶ୍ୱର ଅର୍ଥାତ୍ ମୁଁ ଉତ୍କଳର ଗଜପତି ଗଙ୍ଗେଶ୍ୱର ହୋଇ ନ ପାରେ ।

ମୁଁ ଉତ୍କଳର ଗଜପତି ଥିଲି । ମୋ ନାମରେ ଏପରି ଅବାସ୍ତବ ଓ ଅସମ୍ଭବ ବିଷୟବସ୍ତୁକୁ ଯୋଡ଼ିଦେଇ ମୋତେ ବଦନାମ କରିବା ସଙ୍ଗେ ସଙ୍ଗେ ଉତ୍କଳର ପବିତ୍ର ରାଜବଂଶକୁ ଯେପରି କଳଙ୍କିତ କରାଯାଇଛି, ତାହା କେତେଦୂର ସ୍ପୃହଣୀୟ ଆପଣମାନେ ବିଚାର କରନ୍ତୁ । ମୋର କବିବରଙ୍କ ପ୍ରତି କୌଣସି ପ୍ରକାର ଈର୍ଷା ନାହିଁ । ଯଦି ସତ୍ୟ ପ୍ରକାଶ କରିବା ଦୋଷ ହୁଏ, ତେବେ ମୁଁ କ୍ଷମା ମାଗି ନେଉଛି ।

# ରାଜକୁମାରୀ ଉଷାର ଅଭିଯୋଗ

ଜନସମାଜରେ ମୁଁ ଏପର୍ଯ୍ୟନ୍ତ ରଣଚଣ୍ଡୀ, ପିଶାଚୀ ଏବଂ ଅଲକ୍ଷଣୀ ରୂପେ ପରିଚିତ ହୋଇଆସିଛି । ଏକ ରାକ୍ଷସୀ ପାଇଁ କାହାର ହୃଦୟରେ ଟିକେ ମମତା ନାହିଁ । ମୁଁ କୁଆଡ଼େ ଶତ ଶତ ରାଜକୁମାରମାନଙ୍କୁ ହତାଶ କରିବା ପାଇଁ ଜନ୍ମ ହୋଇଥିଲି । 'ଶତ ନୃପସୂନୁ' ମୋର ପାଇଁ ମଶାଣିଭୂମିରେ ଚିର ବିଶ୍ରାମ ନେଇଛନ୍ତି । ତଥାପି ମୋର ନାରୀହୃଦୟ ତରଳିନି । ତଥାପି ମୁଁ ମୋ ପ୍ରତିଜ୍ଞାରେ ଅଟଳ ରହିବାର ବର୍ଣ୍ଣନା କରାଯାଇଛି ।

ମୁଁ କୁଆଡ଼େ ପ୍ରତିଜ୍ଞା କରିଥିଲି ଯେଉଁ ରାଜକୁମାର ମୋତେ ଦୌଡ଼ରେ ହରାଇ ପାରିବେ, ମୁଁ ତାଙ୍କୁ ପତିପଦରେ ବରଣ କରିବି; କିନ୍ତୁ ଯେଉଁ ରାଜକୁମାର ଦୌଡ଼ରେ ପରାସ୍ତ ହେବେ, ତାଙ୍କର ପୁରସ୍କାର ହେବ ଅକାଳମୃତ୍ୟୁ ।

କବିଙ୍କ ଭାଷାରେ—

"ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀସାର ।
ଗତିବେଗେ ତାକୁ ଯେ ଜିଣିବ ହେବ ପତି ସେ ତାର ।"

ଶତ ଶତ ରାଜକୁମାର ମୋ ସହ ଦୌଡ଼ରେ ପରାସ୍ତ ହୋଇ ଅକାଳମୃତ୍ୟୁ ବରଣ କଲେ—

'କେତେ ଯୁବା ଆସି ଅକାରଣେ ପ୍ରାଣ ଦେଲେ ଏ ଦେଶେ ।'
ମୋତେ ଏହିପରି ଘାତୁକୀରୂପେ କବିବର ଚିତ୍ରଣ କରିଛନ୍ତି ।

ମୋତେ ଯେପରି ଭାବରେ କବିବର ରାଧାନାଥ ବର୍ଣ୍ଣନା କରି-ଅଛନ୍ତି, ତାହା ବାସ୍ତବରେ ବିଷାଦର ବିଷୟ । ଆପଣମାନେ ଦଶମସ୍କନ୍ଧ ଭାଗବତରୁ ମୋ ବିଷୟ ନିଶ୍ଚୟ ଜାଣିଥିବେ । ମୁଁ ଥିଲି ବାଣାସୁରର କନ୍ୟା ।

"ଶୁଣି ରାଜନ ଚିତ୍ର କଥା । ଉଷା ନାମରେ ତା ଦୁହିତା ॥
ଅତି ସୁନ୍ଦର ରୂପରାଶି । କି ଅବା କହିବା ପ୍ରଶଂସି ॥"

ଜଗନ୍ନାଥ ଦାସଙ୍କ ଦଶମସ୍କନ୍ଧ ଭାଗବତର ଉପରୋକ୍ତ ପଦ ପ୍ରତି ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି । ମୁଁ ଥିଲି ଅନିନ୍ଦ୍ୟସୁନ୍ଦରୀ । ମୋର ଜନ୍ମ ଦ୍ୱାପର ଯୁଗରେ । ସେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କ ଯଦୁବଂଶ ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲା । ସେହି ଯଦୁବଂଶଜ ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖି ମୁଁ ବିମୋହିତ ହୋଇଥିଲି ଏବଂ ପରେ ତାଙ୍କ ପାଦତଳେ ମୋର ଜୀବନ ଅର୍ପଣ କରିଥିଲି । ମୁଁ ତାଙ୍କର ପାଦ ପ୍ରକ୍ଷାଳନ କରି, ପୁଷ୍ପଚନ୍ଦନ ଓ ଧୂପଦୀପରେ ତାଙ୍କୁ ପୂଜା କରି ଆନନ୍ଦ ପାଉଥିଲି ।

ଉଷା ପୂଜିଲା ବୀରପାଦ । ଗୁଚିଲା ମନର ବିଷାଦ ॥
ସୁନ୍ଦର ବର ଦେଖି ହସି । ରସିଲା ହୃଦୟ ବିଶ୍ୱାସି ॥
ଏବଂ ପୁଷ୍ପଚନ୍ଦନ ଧୂପ ଦୀପେ । ଆସନ ଭୋଜନ ସମୀପେ ॥
ଏକ ବସନ ଯେନି ଦେହେ । ସେବି ସୁବାକ୍ୟ ମନ ମୋହେ ॥
(ଦଶମସ୍କନ୍ଧ ଭାଗବତ)

ମୁଁ ଥିଲି ପ୍ରେମଶୀଳା । ପ୍ରେମବଳରେ ଅନିରୁଦ୍ଧଙ୍କ ମନ ଜୟ କରିଥିଲି । ମୋର ହୃଦୟ କେବେ ପାଷାଣ ହୋଇ ନ ପାରେ । ଶତ ପୁରୁଷର ସଦ୍ୟ ରକ୍ତରେ ମୋ ତନୁକୁ ରଞ୍ଜିତ କରି ରାଧାନାଥ

ମୋ ଜୀବନରେ କାହିଁକି କାଳିମା ବୋଲିଲେ, ତାହା ମୁଁ ବୁଝି ପାରେନା ।

କବିବର ଗ୍ରୀକ ପୁରାଣ 'ଓଡ଼ିଭ'ର ନାୟିକା ଆଟଲାଣ୍ଟା ଚରିତ୍ର ପାଠ କରିଥିଲେ । ସେହି ଆଟଲାଣ୍ଟା ଚରିତ୍ରକୁ ମୋ ଦେହରେ ଯୋଡ଼ିଦେଲେ । ମୋତେ ଆଟଲାଣ୍ଟାର ଭୂମିକାରେ ଠିଆ କରାଇ ଦିଆଗଲା । ପୁଣି ମୋତେ ଓଡ଼ିଆଣୀର ବେଶ କରାଇ ନୁରୁନଗରୀ ରାଜକନ୍ୟା ରୂପେ ଚିତ୍ର କରାଗଲା । ବାଲେଶ୍ୱରର ନୁରୁପୁର ଗ୍ରାମ କବିଙ୍କ ଲେଖନୀ ବଳରେ ନୁରୁ ନଗରୀରେ ପରିଣତ ହେଲା ! ମୁଁ ଓଡ଼ିଆଣୀ ହୋଇ ଅବଶ୍ୟ ଗର୍ବ ଅନୁଭବ କରୁଛି । ଯେଉଁ ଓଡ଼ିଶାରେ ଯଦୁକୁଳପତି ଶ୍ରୀକୃଷ୍ଣ ଜଗନ୍ନାଥ ରୂପେ ବିଦ୍ୟମାନ ସେହି ଓଡ଼ିଶାର ରାଜକୁମାରୀ ହୋଇ ମୁଁ ଆନନ୍ଦିତ ।

କିନ୍ତୁ ପ୍ରଶ୍ନ ଉଠୁଛି, ଓଡ଼ିଆ ନାରୀ କଣ ଏପରି ହୃଦୟହୀନା ଏବଂ ରାକ୍ଷସୀ ହୋଇପାରେ ? ବିଶ୍ୱ-ଦରବାରରେ ଓଡ଼ିଆ ନାରୀ ଚରିତ୍ରର ଏହା କଣ ଯଥାର୍ଥ ପରିଚୟ ?

କେତେକ ଏହାକୁ ପୁରୁଷର ଅତ୍ୟାଚାର ବିରୁଦ୍ଧରେ ନାରୀର ତୀବ୍ର ପ୍ରତିହିଂସା ରୂପେ ଅଭିହିତ କରି ପାରନ୍ତି । ଯେଉଁ ପୁରୁଷ ଯୋଗୁଁ ଚନ୍ଦ୍ରଭାଗା ସାଗର ମଧ୍ୟରେ ଝାସ ଦେଇଛି, ନନ୍ଦିକା ଆତ୍ମହତ୍ୟା କରିଛି, କୌଶଲ୍ୟା ଜୀବନ୍ତସମାଧି ଲଭିଛି, ସେହି ପୁରୁଷ ଜାତି ବିରୁଦ୍ଧରେ ଉକ୍ତ ପ୍ରତିହିଂସା ଯଥାର୍ଥ ବୋଲି କୁହାଯାଇ ପାରେ । କିନ୍ତୁ ସେହି ନିଷ୍ଠୁର ପୁରୁଷମାନଙ୍କର (ଯଥା— ଗଙ୍ଗେଶ୍ୱର, ଚୈତ୍ରଗଙ୍ଗ, ସୂର୍ଯ୍ୟ) ମାନହାନି ହେଉ ଭୟରେ, ମାନ ପିତା କିଏ ? ଏ ଦେଶର ପୁରୁଷ ନାରୀ ଜାତି ପ୍ରତି ଏପରି ନିଷ୍ଠୁର ହେବାର କୁତ୍ରାପି ଦେଖାଯାଇଛି କି ? ବରଂ ଏ ଦେଶର କବି ଗାଉଛନ୍ତି—

"ଦେହି ପଦପଲ୍ଲବ ମୁଦାରମ୍ ।"

ଯଦି ଧରି ନିଆଯାଏ ପୁରୁଷର ଅହଙ୍କାର ଭାଙ୍ଗିବା ପାଇଁ ମୋର ସୃଷ୍ଟି, ତେବେ ଜୟନ୍ତ ଦ୍ୱାରା ମୋତେ ପରାସ୍ତ କରିବାର ଉଦ୍ଦେଶ୍ୟ ବୁଝି ହେଉନାହିଁ ।

"ହରାଇ ନ ହେଲା ଜୟନ୍ତର ମନେ ଯେଉଁ ହରଷ ।
ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା ମାନସ ॥"

ଉପରୋକ୍ତ ପଦ ପାଠ କଲାବେଳେ ମୋର ଯେ ପୁରୁଷ ଜାତିର ଅହଙ୍କାର ଭାଙ୍ଗିବା ପାଇଁ ଜନ୍ମ, ଏକଥା କିଏ ବିଶ୍ୱାସ କରିବ ? ଯେଉଁ ନାରୀ ପୁରୁଷର ପ୍ରଥମ ଦର୍ଶନରେ ତା'ପ୍ରତି ଆକୃଷ୍ଟ ହୋଇ ତା ପାଇଁ ନିଜେ ମରିବାକୁ ପ୍ରସ୍ତୁତ ହୋଇପଡ଼େ—

"ଏ ମଲେ ଏହାର ସଙ୍ଗେ ହେବି ମର୍ତ୍ତ୍ୟ ଅନ୍ତର,
ଯାହା ଥିବ ଏହା ଭାଗ୍ୟେ ସେହି ଭାଗ୍ୟ ଧ୍ରୁବ ମୋହର ।"

ସେହି ନାରୀ କିପରି ଶତ ଶତ ରାଜକୁମାରଙ୍କ ମୃତ୍ୟୁର କାରଣ ହୋଇପାରେ ? ଏଠାରେ ଅସଙ୍ଗତି ଦୋଷ ଅଛି କି ନାହିଁ, ତାହା ବିଜ୍ଞ ପାଠକମାନେ ବିଚାର କରିବେ । ଗ୍ରୀକ୍ ପୁରାଣରେ ବର୍ଣ୍ଣିତ ସ୍ୱର୍ଣ୍ଣ ଆପଲ୍‌କୁ ରାଧାନାଥ ସ୍ୱର୍ଣ୍ଣ ପଦ୍ମରେ ପରିଣତ କରି ମୋର ଗତିପଥରେ ଜୟନ୍ତ ଦ୍ୱାରା ନିକ୍ଷେପ କରାଇଛନ୍ତି । ମୁଁ କୁଆଡ଼େ ଲୋଭାସକ୍ତ ହୋଇ ସ୍ୱର୍ଣ୍ଣପଦ୍ମ ସାଉଣ୍ଟିବାରେ ଲାଗିଲି । ମୁଁ ରାଜାଘର ଝିଅ ଥିଲି । ରାଜାଝିଅ ଏଭଳି ସୁନାରଙ୍କୁଣୀ ହେବ କାହିଁକି ? ପୁନଶ୍ଚ ଜୟନ୍ତ ସ୍ୱର୍ଣ୍ଣପଦ୍ମ ନିକ୍ଷେପ କରିବା ଏବଂ ମୁଁ ତାହା ସାଉଣ୍ଟିବା ଆଦି କାର୍ଯ୍ୟ ଦର୍ଶକମାନଙ୍କର ଦୃଷ୍ଟିପଥାରୂଢ଼ କିପରି ନ ହେଲା, ଏଥିରେ କେତେ ଦୂର ବାସ୍ତବତା ରହିଛି, ତାହା ବିଚାର କରିବା କଥା ।

ସର୍ବଶେଷରେ ମୋତେ ବିଷ କନ୍ୟା ରୂପେ ଅଭିହିତ କରାଯାଇଛି, ବିବାହ ପରେ ଜୟନ୍ତ ମୋତେ ସ୍ପର୍ଶ କରିବା ମାତ୍ରେ ପ୍ରାଣତ୍ୟାଗ କରିଛନ୍ତି । ଏଠାରେ କବିବର ନିଜ ପରିବାରରେ ଘଟିଥିବା ଗୋଟିଏ ଘଟଣାକୁ ମୋ ଠାରେ ଯୋଡ଼ି ଦେଇ ମୋତେ ବିଷକନ୍ୟାରେ ପରିଣତ କରାଇଛନ୍ତି । ତାଙ୍କ ପିତୃବ୍ୟଙ୍କର ଏକମାତ୍ର ପୁତ୍ର ୧୮୮୮ ସାଲରେ ବିବାହବାସରେ ଝାଡ଼ାରୋଗରେ ପ୍ରାଣ ହରାଇଥିଲେ । ଏହି ଘଟଣାଟିକୁ ଏଠାରେ ରୂପ ଦିଆଯାଇଅଛି । ଏଥିରେ ମୋର ଦୋଷ କେଉଁଠି, ବିଜ୍ଞ ପାଠକେ ବିଚାର କରନ୍ତୁ ।

ମୁଁ ଥିଲି ମାନବୀ । ରକ୍ତମାଂସର ଶରୀର ଧରି ବିଶ୍ୱବକ୍ଷରେ ଜନ୍ମ ହୋଇଥିଲି । କିନ୍ତୁ କବିବରଙ୍କ ନାୟିକା ଊଷା କଦାପି ମାନବୀ ହୋଇ ନ ପାରେ । ତାହାର ଚରିତ୍ର ଅବାସ୍ତବ । ସେଥିରେ ମାନବିକତାର ବିକାଶ ନାହିଁ; ବାସ୍ତବତାର ଚିହ୍ନ ନାହିଁ । ସେ ଦେବୀ ହୋଇ ନ ପାରେ; ତା'ଠାରେ ଦେବତ୍ୱର ସ୍ପର୍ଶ ନାହିଁ ।

ମୁଁ ଥିଲି ପ୍ରେମଶୀଳା । ପ୍ରେମପାଶରେ ଅନିରୁଦ୍ଧଙ୍କୁ ବନ୍ଧନ କରିଥିଲି । ମୋର ପ୍ରେମପସରାରୁ ପ୍ରେମରସ ପାନ କରି ଅନିରୁଦ୍ଧ ଶାନ୍ତିର ନିଃଶ୍ୱାସ ମାରିଥିଲେ । କିନ୍ତୁ ରାଧାନାଥଙ୍କ ଊଷା ଏକ ପାଷାଣୀ, ଏକ ଶୁଷ୍କନଦୀ, ଯେଉଁଠି ଜଳର ଲେଶ ନାହିଁ; କେବଳ ମରୀଚିକା । ସେହି ମରୀଚିକା ପଛରେ ଧାଇଁ 'ଶତ ନୃପସୂନୁ' ପ୍ରାଣ ହରାଇଥିଲେ ।

ଏବେ ବିଜ୍ଞ ପାଠକସମାଜ ନିକଟରେ ମୋର ଅଭିଯୋଗ ଉପସ୍ଥାପିତ କରୁଛି । କବିବର କାହିଁକି ମୋତେ ଏପରି ବିଷକନ୍ୟା ଏବଂ ପାଷାଣୀ ରୂପେ ଚିତ୍ରିତ କରିଛନ୍ତି, ତାହାର ଯଥାର୍ଥ ବିଚାର କରନ୍ତୁ ।

କଥାରେ ଅଛି, ସାହିତ୍ୟ ସମାଜର ପ୍ରତିଫଳନ । ତେବେ କ'ଣ ରାଧାନାଥଙ୍କ ବର୍ଣ୍ଣିତ ଊଷା ଓଡ଼ିଆ ନାରୀସମାଜର ପ୍ରତିନିଧି ?

# ଆମ ଭାଷାର
# "ଧର୍ମସାହିତ୍ୟ ଯୁଗ"ରୁ କିଛି

ପ୍ରାଚୀନ କାଳରେ ଆମ ଦେଶର ଲୋକମାନଙ୍କର ଐତିହାସିକ ମନୋଭାବ ନ ଥିବାରୁ ଧାରାବାହିକ ଇତିହାସ ଲେଖାଯାଇ ପାରି ନାହିଁ । ତେଣୁ କେଉଁ ମହାନ୍ ବ୍ୟକ୍ତିଙ୍କ ମୁଖରୁ ପ୍ରଥମ ଓଡ଼ିଆ ପଦ୍ୟର ସ୍ଫୁରଣ ହୋଇଥିଲା, ତାହା ଜାଣିବାର ଅବକାଶ ନାହିଁ । ସେହି ପ୍ରାଚୀନ କାଳରେ କେତେ କବି ବଣମଲ୍ଲି ପରି ବଣରେ ଫୁଟି ମଉଳି ଯାଇଥିବେ, ତାହା କିଏ କହିବ ? ଆମର ଆଦିକବି କେଉଁ ପଲ୍ଲୀରେ ଜନ୍ମ ହୋଇ ମଉଳି ଯାଇଥିବେ, ତାହା ଜାଣିବାର ଉପାୟ ନାହିଁ ।

ତଥାପି ବହୁ ଆଧୁନିକ ଅନୁସନ୍ଧିତ୍ସୁ, ସାହିତ୍ୟପିପାସୁ ସେହି ଅନ୍ଧକାରକୁ ଭେଦ କରି କିଛି ତଥ୍ୟ ପରିବେଷଣ କରିବା ପାଇଁ ସକ୍ଷମ ହୋଇଛନ୍ତି ।

ଡକ୍ଟର କରୁଣାକର କର ବହୁ ଗବେଷଣା ଫଳରେ 'ବୌଦ୍ଧଗାନ ଓ ଦୋହା'କୁ ଆଦ୍ୟତମ ଓଡ଼ିଆ ରଚନା ବୋଲି ପ୍ରମାଣ କରିଛନ୍ତି । କିନ୍ତୁ କରୁଣାକର ବାବୁ ଏହା ପ୍ରମାଣ କରିବା ପୂର୍ବରୁ ବଙ୍ଗୀୟ ଗବେଷକମାନେ ଏହାକୁ ବଙ୍ଗଳାର ଆଦ୍ୟତମ ରଚନା ବୋଲି ପ୍ରମାଣ କରିଛନ୍ତି । ବର୍ତ୍ତମାନ ବୌଦ୍ଧଗାନ ଓ ଦୋହାକୁ ତିନୋଟି ଭାଷାର ଆଦ୍ୟତମ ରଚନା ବୋଲି ଦାବି କରାଗଲାଣି । କେଉଁଟି ସତ୍ୟ, ତାହା ଜାଣିବା ସହଜସାଧ୍ୟ ନୁହେଁ ।

ବୌଦ୍ଧଗାନ ଓ ଦୋହା ସହିତ ଓଡ଼ିଆ, ବଙ୍ଗଳା ଓ ମୈଥିଳୀ ଭାଷାର ବହୁ ସାମଞ୍ଜସ୍ୟ ମିଳୁଥିବାରୁ ଏହା ଏକ ବିବାଦୀୟ ଅବସ୍ଥାରେ ଉପନୀତ ହୋଇଛି ।

ଏହି ଗ୍ରନ୍ଥ ୮୪ ଜଣ ଆଚାର୍ଯ୍ୟଙ୍କ ଦ୍ୱାରା ଲେଖା ହୋଇଥିବାରୁ, ସମସ୍ତ ଆଚାର୍ଯ୍ୟ ଯେ ଗୋଟିଏ ଭାଷାଭାଷୀ ହୋଇଥିବେ, ଏହା ଭାବିବା ସମୀଚୀନ ନୁହେଁ । ତେବେ ସେହି ୮୪ ଜଣଙ୍କ ମଧ୍ୟରେ ଓଡ଼ିଶାର ବ୍ୟକ୍ତି ଯେ କେହି ନ ଥିବେ, ଏପରି ମଧ୍ୟ କୁହାଯାଇ ନ ପାରେ । ଏଣୁ ସମଗ୍ର ଗ୍ରନ୍ଥଟି ଓଡ଼ିଆ ଆଚାର୍ଯ୍ୟମାନଙ୍କ ଦ୍ୱାରା ଲିଖିତ ବୋଲି ଦାବି କରାଯିବାର ସମୀଚୀନତା ପ୍ରତି ସନ୍ଦେହ ଉପୁଜିଲେ ମଧ୍ୟ ଏହି ଗ୍ରନ୍ଥଟି ରୂପାୟନ ହେବାରେ କେତେକ ଓଡ଼ିଆ କବିଙ୍କର ଯଥେଷ୍ଟ ଅବଦାନ ରହିଛି, ଏହା ଅନସ୍ୱୀକାର୍ଯ୍ୟ । ଏହି ଦୃଷ୍ଟିରୁ ବୌଦ୍ଧଗାନ ଓ ଦୋହାବଳୀକୁ ପ୍ରାଚୀନତମ ଓଡ଼ିଆ ଗ୍ରନ୍ଥ କହିଲେ ଅପଳାପ ହେବ ନାହିଁ ।

ଦଶମ ଶତାବ୍ଦୀ ପୂର୍ବରୁ ବୌଦ୍ଧଗାନ ଓ ଦୋହା ଲିଖିତ ହୋଇଥିବାର ଜଣାଯାଏ । ସେତେବେଳେ ଦେଶସାରା ବୌଦ୍ଧଧର୍ମର ପ୍ରାବଲ୍ୟ ଦେଖା ଦେଇଥିଲା ଏବଂ ବୌଦ୍ଧ ଗ୍ରନ୍ଥଗୁଡ଼ିକ ସଂସ୍କୃତ ଭାଷାରେ ଲେଖା ନ ଯାଇ ଲୋକସାଧାରଣଙ୍କ ପୂର୍ଣ୍ଣ ଅବଗତି ନିମିତ୍ତ ବିଭିନ୍ନ ପ୍ରାକୃତ ଭାଷାରେ ରଚନା କରା ଯାଇଥିଲା । ପ୍ରାକୃତ ଭାଷାରେ ଧର୍ମପ୍ରଚାର କରାଯିବା ସମ୍ରାଟ ଅଶୋକଙ୍କ ସମୟରୁ ଚାଲି ଆସିଥିଲା । ସମ୍ରାଟ ଅଶୋକ ସଂସ୍କୃତ ଭାଷାରେ ବୌଦ୍ଧଧର୍ମ ପ୍ରଚାର ନ କରି ସର୍ବସାଧାରଣ ବୁଝି ପାରିବା ଭଳି ପାଲିଭାଷାରେ ଧର୍ମ ପ୍ରଚାର କରିଥିବାର ଜଣାଯାଏ ।

# ଧର୍ମସାହିତ୍ୟ ଯୁଗ

ଏହି ବୌଦ୍ଧଗାନ ଓ ଦୋହା ଗ୍ରନ୍ଥ "ଧର୍ମ ସାହିତ୍ୟ" ଯୁଗର ମୂଳଭିତ୍ତି ପକାଇଥିଲା । ଓଡ଼ିଆ ସାହିତ୍ୟ ଇତିହାସରେ ଧର୍ମ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ପାରିଛି ।

ବିଭିନ୍ନ ଧର୍ମର ପୃଷ୍ଠପୋଷକ ବିଭିନ୍ନ ଦେବଦେବୀଙ୍କର ମାହାତ୍ମ୍ୟ ଚିତ୍ରିତ କରି ଦୀର୍ଘ ଦିନ ଧରି ବହୁ କାବ୍ୟ ରଚନା କରାଯାଇଥିଲା ।

ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ଏବଂ ବିଷ୍ଣୁ, ଶିବ, କୃଷ୍ଣ, ଚଣ୍ଡୀ, ଲକ୍ଷ୍ମୀ, ଜଗନ୍ନାଥ, ରାମଚନ୍ଦ୍ର ଆଦି ଦେବଦେବୀଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିବାରେ ଷୋଡ଼ଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ମୁଖର ହୋଇଉଠିଲା । ତେଣୁ ଏହି ୭୦୦ ବର୍ଷର କାଳକୁ ଓଡ଼ିଆ ସାହିତ୍ୟରେ "ଧର୍ମସାହିତ୍ୟ ଯୁଗ" ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୌଦ୍ଧଗାନ ଓ ଦୋହାର ରଚନା ପରେ ଏବଂ ସାରଳା ଦାସଙ୍କ ମହାଭାରତ ରଚିତ ହେବା ପୂର୍ବରୁ ଶିଶୁବେଦ ଓ କଳସା ଚଉତିଶା ରଚନା କରାଯାଇଥିଲା ବୋଲି କେତେକ ସମାଲୋଚକ ମତ ଦିଅନ୍ତି । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି କଳସା ଚଉତିଶାକୁ ସାରଳା-ପୂର୍ବ ଯୁଗର ବୋଲି ମତବ୍ୟକ୍ତ କରିଛନ୍ତି । ଏହି କଳସା ଚଉତିଶାର ରଚୟିତା ବତ୍ସାଦାସ ୧୪ଶ ଖ୍ରୀଷ୍ଟାବ୍ଦର ଲୋକ ହୋଇ ପାରନ୍ତି ବୋଲି ଡ. ଆର୍ତ୍ତବଲ୍ଲଭ ମତ ପ୍ରକାଶ କରିଥିବା ବେଳେ ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା କଳସା ଚଉତିଶାର ପ୍ରାଚୀନତା ଉପରେ ସନ୍ଦିହାନ ହୋଇ ଏହାକୁ ସାରଳା-ପର ଯୁଗର ଲେଖା ବୋଲି ସ୍ୱକୀୟ ମତ ପ୍ରଦାନ କରିଛନ୍ତି ।

ସାରଳା-ପୂର୍ବ ଯୁଗରେ ଚଉତିଶା ଲେଖାଯାଉଥିଲେ କେବଳ ଗୋଟିଏ ରଚିତ ହୋଇଥାନ୍ତା କିପରି ? ସେ ସମୟରେ ଏକାଧିକ ଚଉତିଶା ନିଶ୍ଚୟ ଦୃଷ୍ଟିଆଗରେ ପଡ଼ନ୍ତା । ନିଜେ ସାରଳା ଦାସ ବି ଚଉତିଶା ଲେଖିବା ପାଇଁ ମନ ବଳେଇଥାନ୍ତେ । ସେ ଯାହା ହେଉ କଳସା ଚଉତିଶା ଯେ ଏକ ସାର୍ଥକ ସୃଷ୍ଟି, ଏଥିରେ ଭିନ୍ନମତ ନାହିଁ । ଏଥିରେ ଶିବପାର୍ବତୀଙ୍କ ବିବାହ ବିଷୟ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି ।

ସୀସୁବେଦ ସାରଳାଙ୍କ ପୂର୍ବ ଯୁଗର ବୋଲି କେହି କେହି ସମାଲୋଚକ ଏକମତ ହୋଇଛନ୍ତି । ଏହା ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବାର ଅନୁମାନ କରାଯାଏ । କିନ୍ତୁ ସୀସୁବେଦ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସି ପାରି ନ ଥିବାରୁ ସେ ବିଷୟରେ ବିସ୍ତୃତ ଆଲୋଚନା ନିଷ୍ପ୍ରୟୋଜନ ।

## ମହାରଥୀ ସାରଳା ଦାସ

ଧର୍ମସାହିତ୍ୟ ଯୁଗର ମହାନ୍ ରଥୀ ହେଉଛନ୍ତି ଅଦ୍ଭୁତ-କର୍ମା ସାରଳା ଦାସ । ସେ ଆଜି ମହାକବି ରୂପେ ସୁପରିଚିତ ଏବଂ ଯୁଗସ୍ରଷ୍ଟାର ସମ୍ମାନ ଲାଭ କରିଛନ୍ତି । ତାଙ୍କ ନାମ ଅନୁସାରେ ତତ୍କାଳୀନ ସମୟକୁ 'ସାରଳା ଯୁଗ' ବୋଲି କୁହାଯାଏ । ଓଡ଼ିଆ ସାହିତ୍ୟର ସେହି ଦୁଗ୍‌ଧପୋଷ୍ୟ ଶିଶୁ ଅବସ୍ଥାରେ ଏହି ମହାନ୍ ସାଧକ ଅଷ୍ଟାଦଶ ଖଣ୍ଡ ମହାଭାରତ ରଚନା କରି ସାହିତ୍ୟରେ ଯେଉଁ ଭଙ୍ଗିମା ସୃଷ୍ଟି କରିଛନ୍ତି ତାହା ଅଭୂତପୂର୍ବ । ଏଥି ପୂର୍ବରୁ ତେଲୁଗୁ ସାହିତ୍ୟ ବ୍ୟତୀତ ଆଉ କୌଣସି ପ୍ରାକୃତ ଭାଷାରେ ମହାଭାରତ ରଚନା କରାଯାଇ ନ ଥିବାର ଜଣାଯାଏ ।

## ସାରଳା ଦାସଙ୍କ ରଚନାର ବିଶେଷତ୍ୱ

ସାରଳା ଦାସ ଜଣେ ସାମାନ୍ୟ ଅନୁବାଦକ ନ ଥିଲେ । ସଂସ୍କୃତ ମହାଭାରତର ଭାବଧାରା ଓଡ଼ିଶାର ପାଣିପାଗରେ ବାନ୍ଧି ସେ ଏହାକୁ ଏପରି ନିଜସ୍ୱ କରି ପାଠକଙ୍କ ନିକଟରେ ପରିବେଷଣ କରିଛନ୍ତି ଯେ, ସତେ ଯେପରି ମହାଭାରତ ଯୁଦ୍ଧ ଏହି ଓଡ଼ିଶା ଭୂମିରେ କେଉଁଠି ଘଟି ଯାଇଥିଲା । ସାରଳା ମହାଭାରତର ଭୀମସେନ ଉତ୍କଳର କୌଣସି ଏକ ଗୁଣ୍ଡା ସେନାପତି, ଯୁଧିଷ୍ଠିର ଉତ୍କଳର ଏକ ମହାନ୍ ଧର୍ମପରାୟଣ ନରପତି, ଅର୍ଜୁନ ଉତ୍କଳର ଜଣେ ଅଦ୍ଭୁତକର୍ମା ବୀର ଏବଂ ଦୁର୍ଯ୍ୟୋଧନ ଏକ ଦୁର୍ଦ୍ଧର୍ଷ ଗଜପତି ପରି ପ୍ରତୀୟମାନ ହୁଅନ୍ତି । ଓଡ଼ିଶାର ନଦନଦୀ, ଗିରିକାନନ, ଦେଉଳ, ଅଟ୍ଟାଳିକା ଯେପରି ମହାଭାରତ କାବ୍ୟରେ ବର୍ଣ୍ଣିତ ବିଭିନ୍ନ ସ୍ଥାନକୁ ପୂରଣ କରିଛନ୍ତି ସେଥିରୁ ସେହି ବିଖ୍ୟାତ ଧର୍ମଯୁଦ୍ଧ ଯେ ଏହି ଉତ୍କଳଭୂମିରେ ଘଟି ଯାଇଥିଲା, ତାହା ସ୍ପଷ୍ଟ ଜଣାପଡ଼େ । ତାହାହିଁ ସାରଳା ଦାସଙ୍କ ମୌଳିକତା ।

ନାରୀଚରିତ୍ରର ବାସ୍ତବ ଚିତ୍ରଣ ସାରଳା ଦାସଙ୍କର ବୈଶିଷ୍ଟ୍ୟ । ସାରଳା ଦାସ ବାସ୍ତବବାଦୀ । ବ୍ୟାସଦେବ ଅତିମାନବିକତାରେ ବିଶ୍ୱାସ କରୁଥିବା ବେଳେ ସାରଳାଦାସ ମାନବିକତା ଓ ବାସ୍ତବ-ବାଦର ଚିତ୍ରଣ କରିଛନ୍ତି । ତାଙ୍କର ଦ୍ରୌପଦୀ କୁଳବଧୂ ରୂପେ ପାଠକଙ୍କ ନିକଟରେ ପ୍ରତିଭାତ ହୋଇଛନ୍ତି । ଦ୍ରୌପଦୀଙ୍କ ଠାରେ ନାରୀସୁଲଭ ସମସ୍ତ ଲକ୍ଷଣ ଦେଖାଯାଏ ।

## ସାରଳା ମହାଭାରତର ଯୁଦ୍ଧବର୍ଣ୍ଣନାରେ ଓଡ଼ିଆ ପାଇକଙ୍କ ଯୁଦ୍ଧର ଚିତ୍ର

ଉତ୍କଳର ତତ୍‌କାଳୀନ ସାମାଜିକ, ସାଂସ୍କୃତିକ ଏବଂ ରାଜନୈତିକ ଚିତ୍ର ସାରଳା ମହାଭାରତରୁ ମିଳିଥାଏ ।

ସେତେବେଳେ ଓଡ଼ିଆମାନେ ଏକ ଯୁଦ୍ଧଖୋର ଜାତି ଥିଲେ । ଗଜପତି କପିଳେନ୍ଦ୍ର ଦେବ ମହାପ୍ରତାପଶାଳୀ ଥିଲେ । ଯୁଦ୍ଧଯାତ୍ରା ଓ ରାଜ୍ୟଜୟ ଏକ ପ୍ରକାର ନିତିଦିନିଆ କଥା ହୋଇପଡ଼ିଥିଲା । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟ ସ୍ଥାପିତ ହୋଇଥିଲା । କପିଳେନ୍ଦ୍ର ଦେବଙ୍କ ଯୁଦ୍ଧଯାତ୍ରା ଏବଂ ଓଡ଼ିଆ ପାଇକଙ୍କ ଗୌରବପୂର୍ଣ୍ଣ ଯୁଦ୍ଧକୌଶଳ ବର୍ଣ୍ଣନା ମହାଭାରତର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । କେବଳ ନାମର ପରିବର୍ତ୍ତନ ହୋଇ କପିଳେନ୍ଦ୍ର ଦେବଙ୍କ ସ୍ଥାନରେ ପାଣ୍ଡବ ଓ କୌରବମାନଙ୍କ ନାମ ସନ୍ନିବେଶ କରାଯାଇଛି ଏବଂ ଓଡ଼ିଆ ପାଇକଙ୍କ ଯାଗାରେ ପାଣ୍ଡବସେନା ଓ କୌରବ-ସେନାଙ୍କ ନାମ ରଖାଯାଇଛି । ଏଣୁ ସାରଳା ମହାଭାରତର ଯୁଦ୍ଧ-ବର୍ଣ୍ଣନା ଖୁବ୍ ହୃଦୟସ୍ପର୍ଶୀ ଏବଂ ଜୀବନ୍ତ ହୋଇଉଠିଛି ।

## ସାମାଜିକ ଚଳଚଳନ

ସେହିପରି ତତ୍କାଳୀନ ସମାଜର ଚଳଚଳନ ହାବଭାବ ସବୁ ମହାଭାରତରେ ରୂପାୟିତ ହୋଇଛି । ସାରଳା ମହାଭାରତକୁ ତତ୍କାଳୀନ ଓଡ଼ିଶାର ଇତିହାସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାରଳା ଦାସ ନିଜେ ଦେବୀ ଉପାସକ ଥିଲେ ଏବଂ ସେ ସମୟରେ ଶାକ୍ତପୂଜା ପ୍ରାଧାନ୍ୟ ଲାଭ କରିଥିବାର ପ୍ରମାଣ ମିଳେ । "ମା' ସାରଳା"ଙ୍କୁ ସେ ନିଜର ଆରାଧ୍ୟା ଦେବୀ ରୂପେ ପୂଜା କରୁ-ଥିବାର ସୂଚନା ମିଳେ ଏବଂ ମା' ସାରଳା ଠାକୁରାଣୀଙ୍କ ସେବକ ରୂପେ ନିଜକୁ ପରିଚିତ କରିବାକୁ ନିଜର ନାମକୁ ସିଦ୍ଧେଶ୍ୱର ପରିଡ଼ାରୁ ସାରଳା ଦାସ ରଖିଥିଲେ ।

## ସମାଜସଂସ୍କାର ଓ ରୁଚି ପରିତ୍ୟାଗ

ସେ ଜଣେ ବଡ଼ ସମାଜସଂସ୍କାରକ ଥିଲେ । ସେତେବେଳେ ସମାଜରେ ସଂସ୍କୃତ ସାହିତ୍ୟର ପ୍ରଭାବ ପ୍ରବଳ ଥିଲା । ସଂସ୍କୃତ

ସାହିତ୍ୟ ବ୍ୟକ୍ତିତ ପ୍ରାକୃତ ଭାଷାରେ ପୁରାଣ ଲେଖାଗଲେ, ତାହା ଅପବିତ୍ର ହୋଇଯିବ ବୋଲି ଜଗନ୍ନାଥ ଦାସଙ୍କ ସମୟ ପର୍ଯ୍ୟନ୍ତ ଲୋକମାନଙ୍କର କପରେ ବଦ୍ଧମୂଳ ଧାରଣା ଥିଲା ଏବଂ ଜଗନ୍ନାଥ ଦାସ ପ୍ରାକୃତ ଭାଷାରେ ଓଡ଼ିଆ ଭାଗବତ ଲେଖିଥିବାରୁ ତାଙ୍କୁ କପର ସମାଜରୁ ବାସନ୍ଦ କରି ରଖାଯାଇଥିଲା, ତାହା ପାଠକମାନଙ୍କୁ ଅଜଣା ନାହିଁ । ଜଗନ୍ନାଥ ଦାସଙ୍କ ଶତାଧିକ ବର୍ଷ ପୂର୍ବର ଅବସ୍ଥା ଆହୁରି କେତେ ଜଟିଳ ଥିବ ତାହା ସହଜରେ ଅନୁମେୟ । ପୁନଶ୍ଚ ସାରଳା ଦାସ ବ୍ରାହ୍ମଣ ନ ଥିଲେ । ଏକ ଶୂଦ୍ର ପିଲା ମହାଭାରତକୁ ପ୍ରାକୃତ ଭାଷାରେ ଲେଖିବା ବେଳେ କେତେ ପ୍ରତିବନ୍ଧକର ସମ୍ମୁଖୀନ ହୋଇ ନ ଥିବ ? ସଂସ୍କୃତ ପଣ୍ଡିତମାନଙ୍କର କୋପାନଳରୁ ରକ୍ଷା ପାଇ ସେ ଯେ କପରି ଅଷ୍ଟାଦଶ ଖଣ୍ଡର ବିରାଟ ମହାଭାରତ ରଚନା କରି ସମାଜରେ ଆଦୃତ କରାଇ ପାରିଲେ, ତାହା କଳ୍ପନା କରି ହେଉନାହିଁ । ଜଣେ ଅଦ୍ଭୁତକର୍ମା ବ୍ୟକ୍ତିତ ଆଉ କାହାରି ପକ୍ଷେ ଏ କାର୍ଯ୍ୟ କରିବା ସମ୍ଭବ ନୁହେଁ । ସାରଳା ଦାସ ଯଥାର୍ଥରେ ଜଣେ ଅଦ୍ଭୁତକର୍ମା ମହାନ୍ ବ୍ୟକ୍ତି ଥିଲେ, ଏହା ନିଃସନ୍ଦେହ ।

## ଶାସ୍ତ୍ରର ସମସ୍ତ ବିଭବରେ ପରିପୂର୍ଣ୍ଣ

ସାରଳା ମହାଭାରତକୁ ଏକ ଶାସ୍ତ୍ର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଶେଷ ଶିକ୍ଷଣୀୟ ଉପାଖ୍ୟାନରେ ଏହା ପରିପୂର୍ଣ୍ଣ । ଉନ୍ନତ ଲୋକଚରିତ୍ର ସୃଷ୍ଟି କରିବାରେ ସାରଳା ମହାଭାରତ ପୂର୍ଣ୍ଣ କ୍ଷମ ହୋଇ ପାରିଛି, ଏହା କହିବା ବାହୁଲ୍ୟ ମାତ୍ର । ଏଥିରେ ଅସଂଯତ ଅଶ୍ଳୀଳ ବର୍ଣ୍ଣନା ନାହିଁ । ସ୍ଥାନବିଶେଷରେ ଆଦିରସର ବର୍ଣ୍ଣନା କରାଯାଇଥିଲେ ମଧ୍ୟ ତାହା ଅଶ୍ଳୀଳତା ସୃଷ୍ଟି କରିନ ।

ଆଦ୍ୟରସ ବର୍ଣ୍ଣନ କରିବାରେ ସେ ଦକ୍ଷତା ଲାଭ କରିଛନ୍ତି, ଏଥିରେ ଦ୍ୱିଧାମତ ନାହିଁ ।

ପୁନଶ୍ଚ ସେ ବ୍ରହ୍ମତତ୍ତ୍ୱ ଏବଂ ଜ୍ଞାନମିଶ୍ରିତ ଭକ୍ତିମାର୍ଗ ମଧ୍ୟ ଦର୍ଶାଇ ଯାଇଛନ୍ତି । ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ ଏବଂ ଶରୀରଭେଦ ବିଷୟରେ ତାଙ୍କର ପୂର୍ଣ୍ଣ ଧାରଣା ଥିବାର ଜଣାଯାଏ । "ଇଂଳା, ପିଙ୍ଗଳା, ସୀସୁମ୍ଣା" ଆଦି ନାଡ଼ି ବିଷୟରେ ବର୍ଣ୍ଣନା କରିବାକୁ ମଧ୍ୟ ସେ ଭୁଲି ନାହାନ୍ତି । "ଜଗନ୍ନାଥ"ଙ୍କ ବିଷୟରେ ମଧ୍ୟ ସମ୍ୟକ୍ ଧାରଣା ପ୍ରଦାନ କରିଛନ୍ତି । ଶୂନ୍ୟବାଦ ଏବଂ ଯୋଗବାଦ ବିଷୟରେ ତାଙ୍କ କଲମ ନୀରବ ରହିନାହିଁ । ଏଣୁ ସାରଳା ମହାଭାରତକୁ ଏକ ଶାସ୍ତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଲୋକପ୍ରିୟ ରଚନା

ସାରଳା ମହାଭାରତ ଦାଣ୍ଡୀ ବୃତ୍ତରେ ରଚିତ ହୋଇଅଛି । ଏ ବୃତ୍ତରେ ପ୍ରତି ପାଦର ଅକ୍ଷର ସମାନ ହେବାର କୌଣସି ଧରାବନ୍ଧା ନିୟମ ନାହିଁ । କେବଳ ଶେଷ ଅକ୍ଷର ମେଳ ହୋଇଥାଏ ।

"ସାରଳା ମହାଭାରତ"ର ସର୍ବଶ୍ରେଷ୍ଠ ବିଶେଷତ୍ୱ ହେଉଛି ଭାଷା । ଯେଉଁ ପ୍ରକାର ଭାଷା ସକଳ ଶ୍ରେଣୀର ପାଠକଙ୍କ ମନକୁ ଛୁଏଁ, ସେହି ଭାଷାରେ ଏହା ରଚିତ ହୋଇଅଛି । ତେଣୁ ଶତ ଶତ ବର୍ଷ ଧରି ଓଡ଼ିଶାର ପୁରପଲ୍ଲୀରେ ଏହା ଆଦୃତ ହୋଇ-ଆସୁଅଛି । ଏଠାରେ ସାରଳା ମହାଭାରତରୁ କେତୋଟି ପଦ ଉଦ୍ଧାର କରି ଏହାର ଭାଷା ଉପରେ ଆଲୋକପାତ କରାଯାଇ ପାରେ ।

ଗଦର ଗଦର ବାକ୍ୟେ କସ ଗୋ କସ ବୋଲି ।
ଅର୍ଜୁନ ଉପରକୁ ଆସୁଅଛି ପେଲି ॥

ତାକ ଧଅଇ କବାତ ତୁ ରେ କାହାର କତ ଅଛୁ ।
ମୁଇଁ ବନଚର ମୋହର ଆସ୍ତମେ କମ୍ପା ଭେଟୁ ॥
ଆଷ୍ୟ ଥାଉ ଭରସା କମ୍ପାଇଁ କରୁ ମରଣକୁ ।
ମାରି ପନ୍ଥାଇକ ବଳ ଦେବଇଁ ଆଜ ତୁକୁ ॥
ଅର୍ଜୁନ ବୋଇଲେ ଶୁଣ ରେ କବାତ ।
ଏ ମୋହ ଭ୍ରାଥନ୍ତ କେ କଲା ଶରାଘାତ ॥

ଏ ଭାଷା ସବୁ ଶ୍ରେଣୀର ପାଠକଙ୍କ ବୋଧଗମ୍ୟ ଏଥିରେ ଅଣୁ ମାତ୍ର ସନ୍ଦେହ ନାହିଁ । ସରଳ, ସୁନ୍ଦର ଓ ନିରାଡ଼ମ୍ବର ଭାବରେ ପଦ-ଯୋଜନା କରାଯାଇଛି । କିନ୍ତୁ କେତେକ ପ୍ରାଚୀନ ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ ଯାହାର ପ୍ରୟୋଗ କାଳକ୍ରମେ ଲୋପ ପାଇ ଯାଇଛି । ଯଥା "ଭ୍ରାଥନ୍ତ," "ପନ୍ଥାଇ," "ତୁକୁ" ଇତ୍ୟାଦି ।

## ସାରଳା ଦାସଙ୍କ ବ୍ୟକ୍ତିତ୍ୱ

ସାରଳା ଦାସ ଅତ୍ୟନ୍ତ ନମ୍ର ଓ ନିରହଂକାରୀ ଥିବାର ଜଣାଯାଏ । ସେ ସବୁବେଳେ ନିଜକୁ ଅପଣ୍ଡିତ, ଯନହୀନ ବୋଲି ଚିହ୍ନଣ କରି ଯାଇଛନ୍ତି । ଏପରି ବିରାଟ କାବ୍ୟ ସୃଷ୍ଟି କରି ମଧ୍ୟ ସେ କେଉଁଠାରେ ନିଜକୁ ବଡ଼ ବା ମହାନ୍ ବୋଲି ପ୍ରକାଶ କରି ନାହାନ୍ତି । ବରଂ ନିଜକୁ ମୂର୍ଖ ଓ ଅପଣ୍ଡିତ ରୂପେ ଜଣାଇ ନମ୍ରତା ପ୍ରକାଶ କରିଛନ୍ତି—

"ଜନ୍ମହୁଁ ମୂର୍ଖ ମୁଁ ପଢ଼ିନାହିଁ ବିଦ୍ୟା
ନ ଜାଣଇ ଜପ ମନ୍ତ୍ର ନୁହଇ ପ୍ରସିଦ୍ଧା ।"

(ଦ୍ରୋଣପର୍ବ)

ଏହା କେତେ ମହାନୁଭବତା ଏବଂ ବିଶାଳ ହୃଦୟର ପରିଚୟ ଦେଉଛି, ତାହା ସହଜରେ ଅନୁମେୟ ।

ସାରଳା ଦାସ ମହାନ୍ ଜାତୀୟତାବାଦୀ କବି । ପାଣ୍ଡବମାନଙ୍କ ଯାଜପୁରର ହରିସାହୁଙ୍କ ଝିଅ ସହ ବିବାହ କେବଳ ସାରଳା ଦାସଙ୍କ ପରି ଜାତୀୟତାବାଦୀ କବିଙ୍କ ଲେଖନୀମୁନରୁ ସମ୍ଭବ ହୋଇପାରେ । ଭାରତୀୟ ଦରବାରରେ ଓଡ଼ିଶାର ବିଶିଷ୍ଟତା ପ୍ରଦର୍ଶନ କରିବାକୁ ସେ ଯେପରି ବ୍ୟାକୁଳ ଥିଲେ, ତାହା ଏଥିରୁ ଜଣାଯାଏ ।

ଧର୍ମସାହିତ୍ୟ ଯୁଗର ସର୍ବଶ୍ରେଷ୍ଠ କବି ତଥା ଓଡ଼ିଆ ସାହିତ୍ୟର ଆଦି ମହାକବି ରୂପେ ସାରଳା ଦାସ ଯେ ଚିରଦିନ ପାଇଁ ଅମର ରହିଥିବେ ଏବଂ ସାରଳା ମହାଭାରତ ଓଡ଼ିଶାର ପୁରପଲ୍ଲୀରେ ଅଗଣିତ ପାଠକଙ୍କୁ ଅନୁପ୍ରାଣିତ କରୁଥିବ, ଏଥିରେ କାହାର ଦ୍ୱିଧାମତ ନାହିଁ ।

# ଭଞ୍ଜଙ୍କ ନିକଟକୁ
# ଲାବଣ୍ୟବତୀର ପତ୍ର

ପୂଜନୀୟ କବିସମ୍ରାଟ !

ଏ ହତଭାଗିନୀର ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବେ । ଦୀର୍ଘ ଦିନ ପରେ ମୁଁ ଏହି ମର୍ତ୍ତ୍ୟଭୂମିରୁ ଅଶ୍ରୁଗାରରେ ପତ୍ର ଲେଖୁଛି ।

ମୁଁ ଆପଣଙ୍କର ଶ୍ରେଷ୍ଠ ମାନସୀ କନ୍ୟା । ଆପଣଙ୍କ କୁଶଳୀ ତୂଳୀର ମୁଁ ଥିଲି ସାର୍ଥକ ସୃଷ୍ଟି । ମୋର ରୂପ ଲାବଣ୍ୟ ପାଖରେ ବିଶ୍ୱସୁନ୍ଦରୀମାନେ ପରାଜୟ ଲଭିଥିଲେ । ଜଗତପକ୍ଷରେ ମୁଁ ଲାବଣ୍ୟବତୀ ରୂପେ ପରିଚିତ ହୋଇ ରୂପଲାବଣ୍ୟର ଜ୍ୟୋତ୍ସ୍ନାରେ ସମସ୍ତଙ୍କୁ ବିମୋହିତ କରିଥିଲି ।

ଏହା ପରେ ମୋର ଦୁର୍ଭାଗ୍ୟ ପହଞ୍ଚିଲା ! ଆପଣ ଯୁବାବୟସରେ ଆର ପାରିର ଆହ୍ୱାନରେ ସବୁଦିନ ପାଇଁ ଚାଲିଗଲେ । ମୁଁ ମୋର ସାଥୀ ଭଗିନୀ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ,' 'ହାରାବଳୀ' ଓ ବୈଦେହୀ ସହିତ ସେହି ଦିନୁଁ ଓଡ଼ିଶା ରାଜ୍ୟର ସାହିତ୍ୟକାନନରେ ବିଚରଣ କରୁଛି ।

ଏ ମଧ୍ୟରେ ଆପଣଙ୍କୁ ଏବଂ ମୋତେ ଜନସମାଜରେ ନିନ୍ଦିତ କରିବା ପାଇଁ ବହୁ ଅପଚେଷ୍ଟା କରାଯାଇଛି । ନିଜ ନିନ୍ଦା ଅପନିନ୍ଦା ପାଇଁ ମୁଁ ଆଦୌ ଦୁଃଖିତ ନୁହେଁ । ଆପଣଙ୍କ ନିନ୍ଦା ଶୁଣି ଶୁଣି ଅସହ୍ୟ ହେବାରୁ ଆପଣଙ୍କ ଗୋଚରାର୍ଥେ ଏହି ପତ୍ରଟି ଲେଖୁଛି ।

ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ଠାରୁ ଆଜି ପର୍ଯ୍ୟନ୍ତ ବହୁ ସମାଲୋଚକ ଆପଣଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରି କେତେ-ଗୁଡ଼ିଏ ଦୋଷରେ ଆପଣଙ୍କୁ ଅଭିଯୁକ୍ତ କରିଛନ୍ତି । ଯଥା—

(୧) ଆପଣ ଆଦିରସର ସବିଶେଷ ବର୍ଣ୍ଣନା କରି ଅଶ୍ଳୀଳ ସାହିତ୍ୟ ସୃଷ୍ଟି କରିଛନ୍ତି ।

(୨) ଉତ୍କଟ ଭାଷାବନ୍ଧନରେ କାବ୍ୟ-ପ୍ରାଣ ଲୋପ ପାଇଛି ଏବଂ ସାହିତ୍ୟ ଅଯଥା କ୍ଳିଷ୍ଟ ଓ ଦୁର୍ବୋଧ ହୋଇପଡ଼ିଛି ।

(୩) ଛବିଳ ଉତ୍କଳର ରମ୍ୟ ପ୍ରକୃତି ଆପଣଙ୍କ ଲେଖାରେ ରୂପାୟିତ ହୋଇନାହିଁ ।

(୪) ବିଷୟବସ୍ତୁରେ ବିଚିତ୍ରତା ନାହିଁ । କେବଳ ବିଷୟବସ୍ତୁ ରୂପେ ଗତାନୁଗତିକତା ଓ ପ୍ରତ୍ୟେକ କାବ୍ୟରେ ଉଚ୍ଚବଂଶଜ ନାୟକ ନାୟିକାଙ୍କ ମଧ୍ୟରେ ବିବାହ, ମିଳନ, ବିଚ୍ଛେଦ ଓ ପୁନର୍ମିଳନ ବର୍ଣ୍ଣନା କରାଯାଇଛି ।

(୫) ଜାତୀୟତାର ଉଦ୍‌ବୋଧନ ନାହିଁ ।

ଆପଣଙ୍କ ସମ୍ବନ୍ଧରେ ଓଡ଼ିଆ ପତ୍ରପତ୍ରିକାମାନଙ୍କରେ ଦୀର୍ଘ ଦିନ ମସୀଯୁଦ୍ଧ ଲାଗି ରହିଥିଲା । ୧୮୯୩ରେ ବାମଣ୍ଡାର ରାଜଧାନୀ ଦେବଗଡ଼ରୁ 'ବିଜୁଳି' ପତ୍ରିକା ଆତ୍ମପ୍ରକାଶ କଲା । କବିବର ରାଧାନାଥଙ୍କ ପ୍ରଶଂସାଗାନ ଏବଂ ଆପଣଙ୍କ ନିନ୍ଦାଗାନ ଉଦ୍ଦେଶ୍ୟରେ ହିଁ ଏହାର ସୃଷ୍ଟି ହୋଇଥିଲା । 'ବିଜୁଳି'ରେ ଆପଣଙ୍କର ଅନବରତ ନିନ୍ଦାଗାନରେ ଦୁଃଖିତ ହୋଇ ଜଣେ ଲେଖକ 'ଇନ୍ଦ୍ରଧନୁ' ପତ୍ରିକାରେ ଲେଖିଥିଲେ—× × "ଶତ ଶତ ବର୍ଷ ପୂର୍ବେ ମୃତ ଗୋଟିଏ ଚିରସ୍ମରଣୀୟ କବିର ନିନ୍ଦାଗାନ କରି ରାଧାନାଥଙ୍କର ଗୌରବ କେଉଁ ପ୍ରକାରେ ବୃଦ୍ଧି ହେବ, ତାହା ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିର ଅଗମ୍ୟ ।"

ପରେ ରାଧାନାଥ ଆତ୍ମସଫେଇ ଦେଇ ସେ ନିଜେ ଭଞ୍ଜ-ବିରୋଧୀ ନୁହନ୍ତି ବୋଲି ପ୍ରକାଶ୍ୟ ବିବୃତି ଦେଇଥିଲେ ମଧ୍ୟ ତାଙ୍କର ପ୍ରରୋଚନାରେ ଯେ 'ବିଜୁଳି' ଆତ୍ମପ୍ରକାଶ କରି ଆପଣଙ୍କ ନିନ୍ଦାଗାନରେ ନିୟୋଜିତ ହୋଇଥିଲା, ତାହା ବୁଝିବା କାହା ପକ୍ଷରେ ଅସାଧ୍ୟ ନ ଥିଲା । ଉତ୍କଳମଣି ଗୋପବନ୍ଧୁ ପୁରୀଜିଲ୍ଲା ସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା ବେଳେ 'ଇନ୍ଦ୍ରଧନୁ'ର ପକ୍ଷ ଗ୍ରହଣ କରି କବିତାଟିଏ ଲେଖିଥିବାରୁ ରାଧାନାଥ ତାଙ୍କର ବୃତ୍ତି କାଟି ଦେଇଥିଲେ ।

ରାଧାନାଥଙ୍କର ସମସ୍ତ ପ୍ରଭାବ ସତ୍ତ୍ୱେ ଗୋପାଳବଲ୍ଲଭ ଇନ୍ଦ୍ରଧନୁରେ ଆପଣଙ୍କର ଯଶୋଗାନ କରି ସର୍ବଦା ଲେଖୁଥିଲେ । କବିଶେଖର ଚିନ୍ତାମଣିଙ୍କର ମଧ୍ୟ ଆପଣଙ୍କ ପ୍ରତି ଅଚଳ ଭକ୍ତି ଥିଲା । ନିମ୍ନୋକ୍ତ ପଂକ୍ତିରୁ ଆପଣ ତାହା ବୁଝିପାରିବେ—

"ବଞ୍ଚିଥାନ୍ତେ ଯେବେ ଭଞ୍ଜ ମହାକବି,
ଗ୍ରହନ୍ତି ତାଙ୍କର ସେବକ ପଦବୀ ।
ଲେଖନୀ ପତର ଶିରେକରେ ବଢ଼ାଇ
କରନ୍ତି ସଗର୍ବେ ଭାଗ୍ୟର ବଡ଼ାଇ ।"

ଆପଣଙ୍କ ନିନ୍ଦୁକମାନଙ୍କ ସଂଖ୍ୟା ଥିଲା ବେଶୀ । ରାଧାନାଥଙ୍କ ପରେ ବି ଆପଣଙ୍କ ନିନ୍ଦାବାଦ ବନ୍ଦ ନ ହୋଇ କ୍ରମଶଃ ବଢ଼ିବାକୁ ଲାଗିଛି । କେତେକ ଅତ୍ୟାଧୁନିକ କବି ଓ ସମାଲୋଚକଙ୍କର ଆପଣ ପ୍ରଧାନ ଶରବ୍ୟ ହୋଇଛନ୍ତି । ଜଣେ ସମାଲୋଚକ ଆପଣଙ୍କୁ 'ବିରାଟ ଆତଙ୍କ' ରୂପେ ଚିହ୍ନ କରି ଆପଣଙ୍କର କାବ୍ୟରାଜି ପାଠ କରିବା ବେଳେ ଅଙ୍କ କଷିବା ଭଳି ଲାଗେ ବୋଲି ଥଟ୍ଟା କରିଛନ୍ତି ।

ଏହି ନିନ୍ଦୁକମାନଙ୍କ ସମାଲୋଚନା ଅନ୍ତଃସାରଶୂନ୍ୟ । ଆପଣ ବଞ୍ଚିଥିଲେ ଏମାନଙ୍କର ପାଟି ଫିଟନ୍ତା ନାହିଁ । ମୁଁ

ଯେତେବେଳେ ଆପଣଙ୍କର ଶ୍ରେଷ୍ଠ ମାନସୀ କନ୍ୟାରୂପେ ଓଡ଼ିଶା ଭୂଇଁରେ ବିଚରଣ କରୁଛି, ଏସବୁ ଅଭିଯୋଗର ପ୍ରତ୍ୟୁତ୍ତର ନ ଦେବି କିପରି ?

ଆପଣ ତ ରାଧାନାଥଙ୍କ କାବ୍ୟରାଜି କିମ୍ବା ଅତ୍ୟାଧୁନିକ କାବ୍ୟ କବିତା ପାଠ କରିବାର ସୁଯୋଗ ପାଇ ନାହାଁନ୍ତି । ଆପଣ ଥରେ ପଢ଼ିଲେ ଜାଣିପାରନ୍ତେ, କେଉଁ ସାହିତ୍ୟ ଅଶ୍ଳୀଳ । ରାଧାନାଥ ସାହିତ୍ୟରେ ବାପ-ଝିଅ ମଧ୍ୟରେ ପ୍ରେମକାହାଣୀ ଯେପରି ନିର୍ଲଜ୍ଜ ଭାବରେ ବର୍ଣ୍ଣନା କରାଯାଇଛି, ତାହା ଫଳରେ କିଏ କାନରେ ହାତ ନ ଦେବ ? ରାଧାନାଥଙ୍କ ପ୍ରାୟ ପ୍ରତ୍ୟେକ ନାୟିକା ବ୍ୟଭିଚାରିଣୀ । ରାଜାଝିଅ ନନ୍ଦିକା ଶିବ ପାଦତଳେ ପ୍ରେମଭିକ୍ଷା କରୁଛି । ଲଳିତା ଅପରିଚିତ ଯୁବକଠାରେ ନିଜର ଯୌବନ ଉତ୍ସର୍ଗ କରୁଛି ।

କିନ୍ତୁ ମୁଁ କିମ୍ବା ଆପଣଙ୍କ ଅନ୍ୟ ମାନସୀ-କନ୍ୟାମାନେ ଏପରି ବ୍ୟଭିଚାରିଣୀ ଥିବାର କେହି କହି ପାରିବେ ନାହିଁ । ନିଜର ପତି ବ୍ୟତୀତ ପରପୁରୁଷକୁ ଆମେ କେବେ ଚାହିଁନାହୁଁ । ଆପଣ ପରକୀୟା ପ୍ରୀତିର ନିନ୍ଦା କରି ଆମ୍ଭମାନଙ୍କୁ ଏକନିଷ୍ଠ ପାତିବ୍ରତ୍ୟ ଶିକ୍ଷା ଦେଇଥିଲେ । ପଞ୍ଚସଖା ଯୁଗରେ ପରକୀୟା ପ୍ରୀତି ଉତ୍କର୍ଷତା ଲାଭ କରିବା ଫଳରେ ସମାଜରେ ଯେଉଁ ବ୍ୟଭିଚାର ଦେଖାଯାଉଥିଲା; ତାହାର ବିରୁଦ୍ଧରେ ଆପଣ ଆମ୍ଭମାନଙ୍କୁ ସୃଷ୍ଟି କରି ଏକନିଷ୍ଠ ପାତିବ୍ରତ୍ୟ ମନ୍ତ୍ରରେ ଦୀକ୍ଷିତ କରିଥିଲେ । ଆଜିର ଅତ୍ୟାଧୁନିକ ସାହିତ୍ୟ ନାମରେ ଖୋଲାଖୋଲି ପ୍ରେମର ବର୍ଣ୍ଣନା କରାଯାଉଥିଲେ ସୁଦ୍ଧା ତାହା ଅଶ୍ଳୀଳ ନ ହୋଇ ଆପଣଙ୍କ କାବ୍ୟାବଳୀ ଅଶ୍ଳୀଳ ରୂପେ ଅଭିଯୁକ୍ତ ହେଉଥିବା ଦୁଃଖର ବିଷୟ ।

ଆପଣଙ୍କ ସାହିତ୍ୟକୁ କ୍ଳିଷ୍ଟ ଓ ଦୁର୍ବୋଧ ବୋଲି ଯାଇ ଅନାଦର କରାଯାଉଛି । ସଂସ୍କୃତ ସାହିତ୍ୟରେ ଆପଣଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଓଡ଼ିଆ ଭାଷାରେ ନୈଷଧ, କୁମାରସମ୍ଭବ ପରି ମହାକାବ୍ୟ ଲେଖିବା ପାଇଁ ଆପଣ ବ୍ୟାକୁଳ ହୋଇ ପଡ଼ିଥିଲେ । ତାହା ଫଳରେ ଅଦ୍ଭୁତ ଭାଷାପରିପାଟୀର ସୃଷ୍ଟି ହେଲା । ଗୋଟିଏ ପଦରୁ ଏକାଧିକ ଅର୍ଥ ପ୍ରକାଶ ପାଇ ପାଠକକୁ ଚମତ୍କୃତ କରିଛି । ଯଥା—

"ଆସାର ସଘନ କାଳ ହୋଇ ଉଦୟ
ଅଶିତ ପରବଳରୁ ଦରଶମୟ ।"

ଗୋଟିଏ ପଦରୁ ବର୍ଷା, ଶୀତ ଓ ଗ୍ରୀଷ୍ମଋତୁର ବର୍ଣ୍ଣନା ଏକାଧାରରେ ମିଳି ପାରୁଛି । ସାଧାରଣ ପାଠକ ଉଚ୍ଚକୋଟୀର ସାହିତ୍ୟରୁ ରସ ଆସ୍ୱାଦନ କରିପାରିବା ସହଜ ନୁହେଁ । ତାହା ସତ୍ତ୍ୱେ ସାଧାରଣ ପାଠକ ଆପଣଙ୍କ କାବ୍ୟରୁ ରସ ଆସ୍ୱାଦନ ନ କରନ୍ତି ତାହା ନୁହେଁ । ଆଜି ବି ଓଡ଼ିଶାର ଶତ ଶତ ପୁରପଲ୍ଲୀରେ ଗାଈ-ରଖୁଆଳ ଓ ଶଗଡ଼ିଆ "ଚେତ ଚତୁରୀ ଗୃହିଁଲୁ ନଶିନାଶେ ପାଶେ ନାହିଁ ଦ୍ରବ୍ୟ ତରୁଣି" ଓ "ବସ୍ତ୍ର ପଦ୍ମ ବସ୍ତ୍ର ପଦ" ଆଦି ଗୀତ ଗାଉ-ଥିବାର ଶୁଣାଯାଏ । ଆପଣଙ୍କ କବିତାର ଅପୂର୍ବ ସଙ୍ଗୀତମାଧୁରୀ ! ଆଜିର କବିତାକୁ କେତେ ଜଣ ପୁରପଲ୍ଲୀରେ ଗାନ କରନ୍ତି ? ସେଥିରେ ସଙ୍ଗୀତ ନା ସାଙ୍ଗୀତିକ ମୂର୍ଚ୍ଛନା ରହିଛି ? ତଥାପି ଆପଣଙ୍କ ଭାଗ୍ୟ ବିଡ଼ମ୍ବନା ଯେ ଅତ୍ୟାଧୁନିକ ଦୁର୍ବୋଧ ସାହିତ୍ୟିକ ଗଣ-ସାହିତ୍ୟକର ଆସନ ପାଇଁ ଦାବୀ କରୁଥିଲେ ହେଁ ଆପଣଙ୍କ ସାହିତ୍ୟ "ଅଙ୍କ"ର ସ୍ଥାନ ପୂରଣ କରୁଛି ।

ଆପଣଙ୍କ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା ନାହିଁ ବୋଲି ଯେଉଁମାନେ କହନ୍ତି, ସେମାନେ ନିରପେକ୍ଷ ସମାଲୋଚନା କରନ୍ତି

ନାହିଁ ଏବଂ ଅର୍ବାଚୀନତାର ପରିଚୟ ଦିଅନ୍ତି । ମଧ୍ୟଯୁଗରେ ଜନ୍ମ ହୋଇ ବି ଆପଣଙ୍କ ତୂଳୀ ପ୍ରକୃତିର ବର୍ଣ୍ଣନା କରିବାରେ ଯେପରି ଦକ୍ଷତା ଦେଖାଇଛି, ତାହା ଦୁର୍ଲଭ । ମୋର କେଳି-ସରୋବର ଯେପରି ଆପଣଙ୍କ ଲେଖନୀରେ ଚମତ୍କାର ଭାବେ ବର୍ଣ୍ଣନା କରା-ଯାଇଛି, ତାହାର ପଟାନ୍ତର ନାହିଁ ।

"ଦେଖ ରେ ନଳିନୀ, ନଳିନୀ ନଳିନୀରେ ପୂରିତ,
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।
ବି-ରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ,
ରାଜୀବ ରାଜୀବନୟନା ଏଥି ଖେଳା କରଇ ।" (ଇତ୍ୟାଦି)

ପୁଣି ଗ୍ରୀଷ୍ମଋତୁର ବର୍ଣ୍ଣନା କରିବାକୁ ଯାଇଁ ଆପଣ ଯେଉଁ ଜୀବନ୍ତ ବର୍ଣ୍ଣନା ଦେଇଛନ୍ତି, ତାହା ଆଧୁନିକ ସମାଲୋଚକଙ୍କ ଦୃଷ୍ଟି-କୋଣରେ ନ ପଡ଼ିଥିବା ଦୁଃଖର ବିଷୟ ।

"ଶୁଣ ହେ ସାଧବ ମାଧବ ଶେଷ ଝିଲିକା କହି,
ଏ ଗ୍ରୀଷମ ଋତୁ ବିଷମ ସମ ନୁହନ୍ତି କେହି ।
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକର ଦିବସେ,
ଜଳେ କୃଶାନୁ ସାନୁମାନଙ୍କରେ ଅନଶେ ।
ଧରଣୀ ସରଣୀ ଧୂଳିକି କଲା ତପନ ତହିଁ,
ପଥିକ ପଦ ବିପଦକୁ ପଦ ପଦକେ ଦେଇ ।"

ବର୍ଷା, ଶୀତ ଓ ବସନ୍ତ ଋତୁର ଚମତ୍କାର ବର୍ଣ୍ଣନା କରା-ଯାଇଥିଲେ ମଧ୍ୟ ସେଥିପ୍ରତି ସମାଲୋଚକମାନେ ଦୃଷ୍ଟି ଦେଉ ନ ଥିବା ଦୁଃଖର ବିଷୟ । ଅବଶ୍ୟ ଆପଣଙ୍କ ସାହିତ୍ୟରେ ପ୍ରକୃତିର ସ୍ୱତନ୍ତ୍ର ବିକାଶ ହୋଇ ପାରିନି ।

ଆପଣଙ୍କର ସାହିତ୍ୟରେ ଜାତୀୟତାର ଉଦ୍‌ବୋଧନ ନାହିଁ ବୋଲି ଯେଉଁମାନେ ଆକ୍ଷେପ କରନ୍ତି, ତାହା ବିଚାରିବାର କଥା ।

ଗ୍ରୀକ୍ କାବ୍ୟ ଓଡ଼ିଶିରୁ କଥାବସ୍ତୁର ଅନୁକରଣ କରି ଓ ଓଡ଼ିଶା ରାଜବଂଶକୁ ଅପବାଦ କରି ଜାତୀୟତା ଅର୍ଜନ କରାଯାଇ ପାରେ ! ପୁନଶ୍ଚ ବଙ୍ଗଳା ସାହିତ୍ୟରୁ ଅବିକଳ ନକଲ କରି ଅତ୍ୟାଧୁନିକ କବିମାନେ ଜାତୀୟ କବିର ସମ୍ମାନ ପାଆନ୍ତି ! ଯଥା—

"ଝାଦର ବାଦଲେ ଉଡ଼ାଇ ଅଳକ
ଫଗୁଣ ବତାସେ ଜଗାଇ ପଲକ ।"

ଆପଣଙ୍କ ଦୁର୍ଭାଗ୍ୟ ଯେ ଆପଣ ଜାତୀୟ କବିର ସମ୍ମାନ ପାଇ ପାରନ୍ତି ନାହିଁ ।

ମହାରାଣୀ ଭିକ୍ଟୋରିଆଙ୍କ ପଦବନ୍ଦନା କରି ଏ ଦେଶର କବି ଜାତୀୟ କବି ହୋଇଛନ୍ତି । ଏହା ସତ୍ୟ ଯେ, ଆପଣ ସେପରି ହୋଇପାରି ନ ଥାନ୍ତେ । ଆପଣଙ୍କ ପରି ସ୍ୱାଧୀନଚେତା କବି ଏତେ ତଳକୁ ଓହ୍ଲାଇଥାନ୍ତେ କିପରି ?

ଏଥିପାଇଁ ଆପଣଙ୍କ ବିରୁଦ୍ଧରେ ବହୁବାର ଖଡ୍‌ଗ ଉତ୍ତୋଳନ ହୋଇଛି । ସୌଭାଗ୍ୟବଶତଃ ସତ୍ୟବାଦୀ ରଥୀମାନେ, ପ୍ରାଚୀ-ସମିତିର ସାଧକ ଓ କଳିଙ୍ଗ ଭାରତୀର ବକ୍ତାମାନେ ଆପଣଙ୍କ ସପକ୍ଷରେ ଢାଲ ଦେଖାଇ ଆସିଛନ୍ତି ।

ଆପଣ ସ୍ୱର୍ଗରେ ଥାଇ ଶାନ୍ତିରେ ଅଛନ୍ତି । ମୁଁ ହତଭାଗିନୀ ଏ ମର୍ତ୍ତ୍ୟରେ ରହି ଏସବୁ ଶୁଣି ଶୁଣି ଓ ଦେଖି ଦେଖି ବିବ୍ରତ ହୋଇପଡ଼ିବାରୁ ଏ ପତ୍ର ଲେଖିଲି ।

ମାନସୀକନ୍ୟା,
ଲାବଣ୍ୟବତୀ

# କାବେରୀ-ନେଏମଣିର କଳି

ଆଲୋ ଘରଭଙ୍ଗେଇ ନେଏମଣି ! ତୁ ବୋହୂସମାଜରେ କଳଙ୍କ ଲେପି କି ଯଶ ପାଇଲୁ ? ତୋପରି କଳହୁଡ଼ୀ ଯୋଗୁ ବୋହୂସମାଜର ଦୁର୍ନାମ ରଟିଛି । ତୁ ଅଶିକ୍ଷିତା ଗାଉଁଲି ଝିଅ । ଶିକ୍ଷା ସଭ୍ୟତା କ'ଣ ତୁ କାହୁଁ ଜାଣିବୁ ? ଗାଁର ସୀମିତ ପରିବେଶ ମଧ୍ୟରେ ବଢ଼ି ତୁ ସଂକୀର୍ଣ୍ଣମନା ହୋଇପଡ଼ିଛୁ । କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା ତୋର ଅଭ୍ୟାସ ।

ତୋର ଦେଢ଼ଶୁର ବରଜୁ ସାକ୍ଷାତ ଦେବତା ସମାନ ବ୍ୟକ୍ତି । ସେ ଥିଲେ ଗାନ୍ଧୀବାଦର ପ୍ରଚାରକ । ନିଜକୁ କଷ୍ଟ ଦେଇ ଅପରର ଉପକାର କରିବା ତାଙ୍କର ଥିଲା ଜୀବନର ବ୍ରତ । ବରଜୁ ପରି ଦେଢ଼ଶୁର କେତେଜଣ ଭାଇବୋହୂଙ୍କ ଭାଗ୍ୟରେ ମିଳେ । ଶଶୁର ଗ୍ରାମ ପଧାନ ମଧ୍ୟ ଜଣେ ଆଦର୍ଶ ବ୍ୟକ୍ତି ଥିଲେ । ସେ ଏକ ସରଳ, ନିଷ୍କପଟ ଓ ସଚ୍ଚୋଟ ଚାଷୀ ଥିଲେ । ଦୁଇ ପୁଅବୋହୂଙ୍କ ପ୍ରତି ତାଙ୍କ ହୃଦୟରେ ସ୍ନେହ ପୂରି ରହିଥିଲା । ତାଙ୍କର ଉଦ୍ୟମ ଓ ନିଷ୍ଠାଫଳରେ ଘରେ କିଛି ଅଭାବ ନ ଥିଲା । ପରିବାରଟି ସୁଖ ଶାନ୍ତିରେ ଚାଲୁଥିଲା । ଶାଶୂ ବି ଚଦ୍ରୂପ ଘରକରଣୀ ଏବଂ ଦାନଶୀଳା ଥିଲେ । ଅମୂଲଠାରୁ ଧାନଗୁଣ୍ଡିଳ ପର୍ଯ୍ୟନ୍ତ ସବୁ ଘରେ ସାଇତି ରଖିଥିଲେ । ବଡ଼ ଜା' ହାରିବୋଉ ବି ମନ୍ଦ ନ ଥିଲା । ପ୍ରଥମେ ପ୍ରଥମେ ଅବଶ୍ୟ ତୋ ସହ କଳି କରୁଛି; କିନ୍ତୁ ପରେ ବରଜୁ ତାକୁ ଏପରି ସୁମଣିଷ କରି ଗଢ଼ିଛି ଯେ, ସେ ମାଟିକୁ ମ' ବୋଲି

କହୁନାହୁଁ । ହସି ହସି ସବୁ ସହୁଛୁ । ଘରୁ ବାହାରିଯିବା ବେଳେ ବି ତୋତେ ପଦେ ହେଲେ ଗାଳି ଦେଉନାହୁଁ ।

ଶାମ ପଧାନ ମରିବାବେଳେ କହୁଯାଇଥିଲେ—

"ବଳ ମଝିରେ ହାଡ଼ ପଡ଼ିବ ନାହିଁ କି ଘର ଭିତରେ ପାଚେରୀ ଉଠିବ ନାହିଁ ।"

ଶଶୁରଙ୍କ ଏହି ଶେଷ କଥାପଦର ମର୍ମ ତୁ କ'ଣ ବୁଝିପାରିଲୁ ନାହିଁ । ସବୁବେଳେ ସ୍ୱାମୀ 'ଛକଡ଼ି'କୁ କୁଶିକ୍ଷା ଦେଇ ଜା ଦେଢ଼ଶୁର ସହ କଳି ଲଗାଇଲୁ । ଛକଡ଼ି ଥିଲା ମାଇଚିଆ, ନିର୍ବୁଦ୍ଧିଆ ଓ ନିହାତି ସରଳ ପ୍ରକୃତିର ଲୋକ । ତାକୁ ମାୟାଜାଲରେ ବନ୍ଧନ କରିବା ତୋ ପକ୍ଷରେ କଷ୍ଟ ନ ଥିଲା । ଯେଉଁ ଛକଡ଼ି ଭାଇଙ୍କୁ ଦେବତା ପରି ଭକ୍ତି କରୁଥିଲା, ଆଗରେ ସିଧା ମୁଣ୍ଡ ଟେକି ବାଟ ଚାଲୁ ନ ଥିଲା, ସେ ଫେର ଭାଇଙ୍କୁ ମୁହାମୁହିଁ ଜବାବ ଦେଇ ପାରିଲା କେବଳ ତୋରି କୁହୁକ ବିଦ୍ୟାଫଳରେ ।

ତୋରି ଯୋଗୁଁ ସୁନା ଘର ଚୂନା ହେଲା । ଧନ୍ୟ କହିବା ସେ ବରଜୁକୁ ! ପିଲାଛୁଆ ଧରି ଘରୁ ବାହାରିଗଲା ପଛେ ଭିନେ ହେଲା ନାହିଁ । ତଥାପି ତୋ ମନରେ ଚେତା ପଶିଲାନି । ତୋର ସନ୍ଦେହୀ ମନ ଭାବିଲା, ହାଡ଼ିବୋଉ ଗଣ୍ଠିଲିରେ ଟଙ୍କା ସୁନା ବାନ୍ଧି ନେଇ ଯାଉନି ତ । କ'ଣ ଦେଖିଲୁ ? ହାଡ଼ିବୋଉ ତୋପରି ଖୁଣ୍ଟି ଖାଉଟି ଘର ଝିଅ ନୁହେଁ ଯେ । ଶାଶୁଶ୍ୱଶୁର ଅମଳର ଘରଦ୍ୱାର, ସମ୍ପତ୍ତିବାଡ଼ି, ଯାନଆସନ ଯେ ଛାଡ଼ି ଚାଲି ଯାଉଛି ସେ କଣ ତୋପରି ନିକୁଛିଆ ଘର ଝିଅ ହୋଇପାରେ ?

ତୋ ନାମ ସିନା ନେତ୍ରମଣି, କିନ୍ତୁ ତୁ ଯଥାର୍ଥରେ ଥିଲୁ ଅନ୍ଧୁଣୀ । ତୁ ଯେତେବେଳେ ବୋହୂ ହୋଇ ଆସିଲୁ, ସେତେ-ବେଳେ ଦେଶର ପରିସ୍ଥିତି ପ୍ରତି ତୋର କଣ ଟିକେ ଦୃଷ୍ଟି

ପଡ଼ ନ ଥିଲ ? ବାପୁଜୀଙ୍କ ଆହ୍ୱାନରେ ଶତ ସହସ୍ର ମହିଳା ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଦେଶସେବା କରୁଥାନ୍ତି । ୧୯୩୦ର ଦାଣ୍ଡୀ ଅଭିଯାନ ଓ ଦେଶ ବ୍ୟାପୀ ଉତ୍ସାହ ଦେଶ-ମାତୃକାର ସେବା ଆତ୍ମତ୍ୟାଗ, ଏସବୁ ତୋ କାନରେ କ'ଣ ଆଦୌ ପଶୁ ନ ଥିଲ ।

ଏସବୁ ତୋର ଦୋଷ ନୁହେଁ ନେଇମଣି । ଏହା ତୋର ବାପାମାଆଙ୍କର ଦୋଷ । ତୁ ସିନା ସ୍କୁଲକଲେଜରେ ପଢ଼ିଥିଲେ ତୋର ଜ୍ଞାନ-ନେଇ ଥାନ୍ତା । ଖବରକାଗଜ ପତ୍ରପତ୍ରିକା ପଢ଼ି ଦେଶର ଖବର ଜାଣିଥାନ୍ତୁ । ତୁ ତ ଶୃଙ୍ଖଶାଳୀ ଦୁଆରମୁହଁ ମାଡ଼ନୁ । ତୁ ଏତେ ଖବର ରଖିଥାନ୍ତୁ କପରି ? ଦେଇପିଣ୍ଡାରେ କମ୍ବା କବାଟକଣରେ ବସି କୁଚିନ୍ତା କରିବା ତୋର ହେଲା ଅଭ୍ୟାସ । ନାରୀ ଅଶିକ୍ଷିତ ହେଲେ କି ଧରଣର ହୁଏ, କି କି କାମ କରି ବସେ, ତାହାର ପ୍ରକୃଷ୍ଟ ଉଦାହରଣ ତୁ ଓ ତୋର କାର୍ଯ୍ୟାବଳୀ ।

ମୋ ବିଷୟରେ ବହୁତ କହିଲଣି କାବେରୀ । ଆଜକୁ ଦୀର୍ଘ ଛତିଶ ବର୍ଷ ହେଲ ନାନା ନିନ୍ଦା ଅପନିନ୍ଦା ଶୁଣି ଶୁଣି ମୁଁ ଏତେ ଅଭ୍ୟସ୍ତ ହୋଇ ପଡ଼ିଲଣି ଯେ, ଆଉ ମୋତେ ଦୁଃଖ ଲାଗୁନି । ଏସବୁ ମୋର ଦହିସୁହା ହୋଇଗଲାଣି ।

ମୁଁ ଥିଲି ଗାଉଁଲି ଝିଅ । ପାଠଶାଠର ମୁଁ ଧାର ଧାରେନି; ଏହା ନିରାଟ ସତ । ମୋର ମାନସପିତା କାଳିନ୍ଦୀଚରଣ ମୋତେ ଦୂର ମଫସଲରୁ ଗୋଟାଇ ଆଣିଥିଲେ ଏବଂ ସେହିପରି ମଧ୍ୟ ପଧାନ-ପଡ଼ା ଭଳି ଏକ ଅଖ୍ୟାତ ପଲ୍ଲୀରେ ବଧୂବେଶରେ ଗୁଡ଼ି ଦେଇଥିଲେ । ମୁଁ ସହର ବଜାରକୁ ଯାଇନି, ଆଧୁନିକ ସଭ୍ୟତା କ'ଣ ଜାଣିନି । ସ୍ୱାଧୀନତା ଆନ୍ଦୋଳନ ବିଷୟରେ ମୋର କିଛି

ଧାରଣା ନ ଥିଲା । ମୁଁ ପୁଣି ବୋହୂ ହୋଇ ଆସିଥିଲି ୧୯୩୧ ମସିହାରେ । ମୁଁ ଉପନ୍ୟାସର ନାୟିକା ନ ହୋଇ ବାସ୍ତବ ମଣିଷ ହୋଇଥିଲେ ମୁଁ ହୁଏତ କେଉଁ ଦିନରୁ ସେପାରି ଯାତ୍ରା କରି-ସାରନ୍ତିଣି ଅଥବା ମରି ନ ଥିଲେ ତଳେ ନାକ ଘୂଷୁରୁଥାନ୍ତା ।

କିନ୍ତୁ କାବେରି, ତୁମେ ତ ଅତ୍ୟନ୍ତ ଆଧୁନିକା । କଲେଜରେ ପାଠ ପଢ଼ିଛ । ଏଫ୍. ଏ., ବି. ଏ. ପାସ କରିଛ । ତୁମେ ଉଚ୍ଚଶିକ୍ଷିତା ଆଧୁନିକା ଓ ସୁନ୍ଦରୀ ଝିଅ । ତୁମେ ସୁଶ୍ରୀ । ତୁମ ସହ ମୋର ଆଦୌ ତୁଳନା ହୋଇ ନ ପାରେ । ତୁମ ପରି ମୋତେ ଟେରିଲିନ୍ ପିନ୍ଧି ଆସେ ନି କି ହାଇହିଲ୍ ଲଗାଇ ଆସେ ନି । ନାଲିପାଟ ପିନ୍ଧି ହାତେ ଓଢ଼ଣା ଦେଇ ମୁଁ କବାଟକଣରେ ବସୁଥିଲି ।

ତୁମେ ୧୯୫୭ ମସିହାର ବୋହୂ । ତୁମ ମୋ ଭିତରେ ଆକାଶପାତାଳ ପ୍ରଭେଦ । ତୁମ ବେଳକୁ ଦେଶର ଅବସ୍ଥା କେତେ କ'ଣ ଆଗେଇ ଯାଇଚି । ତୁମେ ସ୍ୱାଧୀନ ଦେଶର ମୁକ୍ତ ଆକାଶତଳେ ବିଚରଣ କରି ନାରୀ-ସ୍ୱାଧୀନତା ଉପଭୋଗ କରୁଛ । ସୁମାତା ଓ ସୁଗୃହିଣୀ ହେବ । ପତ୍ରପତ୍ରିକାରେ କେତେ ଲେଖା ଲେଖିଥିବ ।

ମହାବୋଉ ପାଠୋଇ ବୋହୂ ଆଣିବାକୁ ଇଚ୍ଛା କରିଥିଲେ । ତୁମର ଉଜ୍ଜ୍ୱଳ ରୂପ ସାଙ୍ଗକୁ ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀଟାଏ ବି ଥିଲା । ତେଣୁ ମହାବୋଉ ତୁମକୁ କୁଳବଧୂରୂପେ ପାଇ ଆନନ୍ଦିତ ହୋଇଛନ୍ତି । ଶଶୁର ପୀତାମ୍ବର ବାବୁଙ୍କର ଆନନ୍ଦ କହିଲେ ନ ସରେ । ତୁମପରି ସୁନ୍ଦରୀ ଏବଂ ଉଚ୍ଚଶିକ୍ଷିତା ସ୍ତ୍ରୀ ପାଇ ମୋହନ ବି ନିଜକୁ ଧନ୍ୟ ମନେ କରୁଛି ।

କିନ୍ତୁ ଜଣକର ସନ୍ଦେହୀ ଚକ୍ଷୁରୁ ତୁମେ ମୁକ୍ତି ପାଇନା କାବେରି ! ସେ ହେଉଛି ତୁମର ନଣନ୍ଦ ମାୟା । ମାୟା ତୁମର

ହାବଭାବ, ଗତିବିଧି ପ୍ରତି ସତର୍କତା ସହ ଦୃଷ୍ଟି ଦେଇଛୁ ଏବଂ ତୁମ ଅସଲ ରୂପକୁ ପଦାରେ ପକାଇ ଦେଇଛୁ ।

ତୁମେ ଏକ ମହାକାଳ ଫଳ କାବେରି ! ତୁମର ଉପରଟା ସିନା ଚକଚକ ଚକ୍‌କଣ; କିନ୍ତୁ ତୁମର ଭିତରଟା ନର୍ଦ୍ଦମା । ଏତେ ପାଠ ପଢ଼ି ବି ସେ ନର୍ଦ୍ଦମାଟାକୁ ସଫା କରି ପାରିଲ ନି । ମୁଁ ମାନୁଛି କାବେରୀ, ମୋର ଭିତରେ ବି ନର୍ଦ୍ଦମା ରହିଛି; କିନ୍ତୁ ସେ ନର୍ଦ୍ଦମାକୁ ସଫା କରିବାପାଇଁ କିଏ ଚେଷ୍ଟା କରିଛି କହ ତ ଦେଖି ? ହାଡ଼-ବୋଡ଼କୁ ମଣିଷ କରିବାପାଇଁ ବିରଜୁ ଋଷୀ ସାଧନା କରିଛି; କିନ୍ତୁ ମୋର ଗୋଡ଼ ତଳରୁ ତଳକୁ ଯାଇଛି । ଉପରକୁ ଉଠାଇବାକୁ କେହି ଥରେ ଭୁଲରେ ଚେଷ୍ଟା କରି ନି, ଏବଂ ମୋ ପରି ଅଶିକ୍ଷିତା ଗାଉଁଲି ଝିଅ ପକ୍ଷରେ ନିଜେ ଚେଷ୍ଟା କରିବା କ'ଣ ସମ୍ଭବ ଥିଲି ?

କିନ୍ତୁ ତୁମେ ତ ଉଚ୍ଚବଂଶଜ, ପୁଣି ଆଧୁନିକା ଓ ଉଚ୍ଚ-ଶିକ୍ଷିତା । ତୁମେ କାହିଁକି ତୁମ ମନର ଆବିଳତାକୁ ପରିଷ୍କାର କରି ପାରିଲ ନି ?

ଶାଶୁର ପାଦଧୂଆ ପାଣି ପିଇବା ବାହାନା କରି ଲୁଚେଇ ଫିଙ୍ଗିଦିଅ କାହିଁକି ? ତୁମକୁ ବା ଏଥିପାଇଁ କିଏ ବାଧ କରୁଥିଲି ? ଆମେ ଗାଉଁଲି ଝିଅ ହେଲେ କ'ଣ ହେବ, ଏଭଳି ଛଳନା କରି ଶିଖିନୁ । ତୁମେ ବାସ୍ତବରେ ଏକ ଛଳନାମୟୀ ନାରୀ । ପୁଣି ଶ୍ରେଷ୍ଠ ଦିଅର ମୁହଁରେ ଟିକେ ଗୋଲାପି ପାଉଡର ଲଗାଇ ଦେବାକୁ ତୁମ ସତ ବଳି ନି । ଗୋଲାପି ପାଉଡର ଲୁଚାଇ ଦେଇ ଧଳାପାଉଡର ଲଗାଇ ଦେଇଛ । ଏପରି ନିକୁଟିଆପଣ କ'ଣ ଶିକ୍ଷିତା ନାରୀର ଭୂଷଣ ?

ବାପଘରକୁ ଯିବାବେଳେ ପିଲା ଦିଅର ପ୍ରତାପ ଓ ରଞ୍ଜନକୁ ସାଥିରେ ନେଇଥିଲେ କି କ୍ଷତି ହୋଇଥାନ୍ତା ? ଗୁରିଅଣା ପଇସା

ଦେଇ ପିଲାମାନଙ୍କୁ ଭୁଲାଇ ଦେବାକୁ ଚେଷ୍ଟା କରିଥିଲ । ଏଣେ ବାପଘରୁ ଆସିଲାବେଳେ ସାନ ଝିଅ କୁନାକୁ ନେଇ ଆସିଲ କିପରି ?

ଏସବୁ ଠିକ ଠିକ କଥା ହୋଇପାରେ; କିନ୍ତୁ ଏହି ସବୁ ଠିକ ଠିକ କଥାରେ ହିଁ ତୁମେ ମାମୁଁ ପାଖରେ ଧରା ପଡ଼ିଯାଉଥିଲ ।

ମହାବୋଉର ଝିଅଜ ଆଦି ସର୍କସ ଦେଖିବାକୁ ଆସି କିଛି ଦିନ ରହିଯିବାରୁ ସେମାନଙ୍କୁ ଘରୁ ବିଦା ନ କରିବା ପର୍ଯ୍ୟନ୍ତ ତୁମକୁ ନିଦ ହେଉ ନ ଥିଲା । ମହାବୋଉ ବାପଘରକୁ ଯିବାପରେ ତୁମେ ଯେପରି ଘରର ମାଲିକଆଣୀ ସାଜି ଛୋଟ ଛୋଟ ପିଲାମାନଙ୍କୁ ବି ଭଲ କରି ମୁଠାଏ ଖାଇବାକୁ ଦେଇନାହଁ, ତାହା କ'ଣ ସୁଗୃହିଣୀର କର୍ତ୍ତବ୍ୟ ?

ଶେଷକୁ ସ୍ୱାମୀ ମୋହନକୁ ଶିଖାଇ ସରକାରୀ ଘରକୁ ଚାଲିଗଲ । ଥରେ ଭାବିଥିଲ ବୁଢ଼ାବୁଢ଼ୀ କିପରି ଚଳିବେ ? ମାମୁଁ ସେତେବେଳକୁ ବିବାହ କରିସାରିଥିଲା । ବୁଢ଼ାବୁଢ଼ୀଙ୍କର ତୁମେ ଥିଲ ଏକମାତ୍ର ଭରସା । ତୁମେ ଶାଶୁଶଶୁରଙ୍କ ପ୍ରତି ଯେଉଁ ବ୍ୟବହାର ଦେଖାଇଛ, ତାହା କେତେଦୂର ଯଥାର୍ଥ ନିଜେ ଭାବି ଦେଖ ।

ତୁମେ ଯଥାର୍ଥରେ ପଳାଶଫୁଲ । ତୁମପରି ଛଳନାମୟୀ ନାରୀ ବିରଳ । ତୁମେ ଶିକ୍ଷା ପାଇ ଶିକ୍ଷିତା ହୋଇଥିଲ ସତ; କିନ୍ତୁ ତୁମର ବ୍ୟବହାର ଅଶିକ୍ଷିତା ନାରୀଠାରୁ ଆହୁରି ଜଘନ୍ୟ ଥିଲା ।

ଆମେ ଅଯଥା କଳି କରି ପରସ୍ପରକୁ ଆକ୍ଷେପ କରିବା ଉଚିତ ନୁହେଁ ନେବମଣି ! ପ୍ରକୃତ କଥାଟା ଆମେ ବୁଝି ନ ଥିବାରୁ ଅବାଟରେ ପଶି ପଥହରା ହେଉଛେ ।

ଏବେ ପ୍ରକୃତ କଥାଟା ଶୁଣ ।

ସମାଜର ଚିତ୍ର ପରିବେଷଣ କରିବା ସାହିତ୍ୟିକର ଧର୍ମ । ସେଥିପାଇଁ କୁହାଯାଏ ସାହିତ୍ୟ ସମାଜର ପ୍ରତିଫଳନ । ସାହିତ୍ୟ ଓ ସମାଜ ଓତପ୍ରୋତଭାବରେ ଜଡ଼ିତ ।

ଓଡ଼ିଆ ଉପନ୍ୟାସ-ଜଗତରେ ପ୍ରଥମେ ସାମାଜିକ ଛବି ଚିତ୍ରଣ କରିବାକୁ ଚେଷ୍ଟା କରିଥିଲେ ଯୁଗସ୍ରଷ୍ଟା ଫକୀରମୋହନ । ତାଙ୍କର ଉପନ୍ୟାସଗୁଡ଼ିକରେ ଯଥା 'ଛମାଣ ଆଠଗୁଣ୍ଠ,' 'ମାମୁଁ,' 'ଲଛମା' ଓ 'ପ୍ରାୟଶ୍ଚିତ୍ତ' ଆଦିରେ ତତ୍କାଳୀନ ସମାଜର ନିଖୁଣ ଛବି ପରିସ୍ଫୁଟ ହୋଇପାରିଛି । ଫକୀରମୋହନଙ୍କ ପୂର୍ବରୁ ଯେଉଁ କେତେଗୋଟି ଉପନ୍ୟାସ ଲେଖା ଯାଇଥିଲି (ଯଥା—ଉମେଶଚନ୍ଦ୍ର ସରକାରଙ୍କର ପଦ୍ମମାଳୀ ଏବଂ ରାମଶଙ୍କର ରାୟଙ୍କର ବିବାସିନୀ), ସେଗୁଡ଼ିକରେ ବାସ୍ତବରେ ଉପନ୍ୟାସର ଧର୍ମ ନାହିଁ । ତେଣୁ ଫକୀରମୋହନଙ୍କୁ ଓଡ଼ିଆ ଉପନ୍ୟାସ ସାହିତ୍ୟର ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ । ଫକୀରମୋହନଙ୍କ ଆଦର୍ଶକୁ ପରବର୍ତ୍ତୀ ଲେଖକମାନେ ଅନୁସରଣ କରି ସାମାଜିକ ଚିତ୍ର ପ୍ରଦାନ କରିବାକୁ ପ୍ରୟାସୀ ହେଲେ ।

ସବୁଜ ଯୁଗରେ ସମାଜସଂସ୍କାରକୁ ମୁଖ୍ୟ ଆଦର୍ଶରୂପେ ଗ୍ରହଣ କରାଯାଇଥିଲି । ଏହି ଯୁଗର ମୋଟ ପାଞ୍ଚଜଣ ଲେଖକଙ୍କ ମଧ୍ୟରେ ତୁମ ମାନସପିତା କାଳିନ୍ଦୀଚରଣ ଅନ୍ୟତମ । ତାଙ୍କର ଅନ୍ୟ ସଙ୍ଗୀମାନେ ହେଲେ ଶରତ୍‌ଚନ୍ଦ୍ର, ଅନ୍ନଦା, ବୈକୁଣ୍ଠନାଥ, ହରିହର ।

ସେତେବେଳେ ସ୍ୱାଧୀନତା ଆନ୍ଦୋଳନ ବିଶେଷତଃ ଗାନ୍ଧୀ-ବାଦର ପ୍ରବଳ ପ୍ରଚାର ଚାଲିଥାଏ । କାଳିନ୍ଦୀଚରଣ ଗାନ୍ଧୀବାଦ

ପ୍ରତି ଆକୃଷ୍ଟ ହୋଇପଡ଼ିବା ସ୍ୱାଭାବିକ ଥିଲା । ଗାନ୍ଧୀବାଦର ପ୍ରତୀକ-ସ୍ୱରୂପ ସେ ବରଜୁକୁ ଠିଆ କରାଇଲେ । ଯେପରି ଶ୍ରୀରାମଙ୍କ ଚରିତ୍ରର ବିକାଶପାଇଁ ରାବଣର ସୃଷ୍ଟି, ଠିକ୍ ସେହିପରି ବରଜୁର ଚରିତ୍ର ବିକାଶପାଇଁ ତୁମକୁ ସୃଷ୍ଟି କରାଗଲା । ବାସ୍ତବରେ ତୁମର ଏଥିରେ ଦୋଷ ନାହିଁ । ଲେଖକର ଲେଖନୀ ତୁମକୁ ଏପରି ଗଢ଼ି ଠିଆ କରାଇଛି ।

କେତେକ କହନ୍ତି ତେଲଙ୍ଗ ନୀଳକଣ୍ଠବର୍ତ୍ତୀ ବେରବୋଇ ଗ୍ରାମରେ ଜଣେ ଯୁବକ କାଳନ୍ଦୀ ବାବୁଙ୍କୁ ତା'ର ଜୀବନ ଇତିହାସ କହୁ କହୁ କହିଥିଲା ଯେ, ସାନଭାଇ ତା ସହ କଳି କରି ଭିନେ ହେବାକୁ ଜିଦ୍ ଧରି ବସିବାରୁ ସେ ଘରଦ୍ୱାର ଜମିବାଡ଼ି ସବୁ ଛାଡ଼ି-ଛାଡ଼ି ଦେଇ ଚାଲି ଆସିଛି । ଏହି ବିଷୟବସ୍ତୁ ଉପରେ ରଚିତ ହେଲା କାଳନ୍ଦୀଚରଣଙ୍କ ଅମର ଉପନ୍ୟାସ 'ମାଟିର ମଣିଷ' ।

× × × ×

ତୁମ କଥା ଠିକ୍ କାବେରୀ । ଲେଖକର ଲେଖନୀ ଅଦ୍ଭୁତ । ସାହାରା ମରୁଭୂମିରେ ଲେଖକ ନନ୍ଦନକାନନ ରଚନା କରିପାରେ, ପାଷାଣ ଦେହରେ ପ୍ରାଣସଞ୍ଚାର କରିପାରେ । ଏ ସବୁ ଲେଖକର କରାମତି ।

ତୁମେ ଶିକ୍ଷିତା ବଧୂସମାଜର ପ୍ରତିନିଧିତ୍ୱ କେବଳ କରିଚ କାବେରୀ । ଔପନ୍ୟାସିକା ବସନ୍ତକୁମାରୀ ତୁମ ଦେହରେ ଶିକ୍ଷିତା ବଧୂମାନଙ୍କର ସବୁ ଦୁର୍ଗୁଣକୁ ଢାଳିଦେଇ ତୁମକୁ ପାଠକ ଆଗରେ ଠିଆ କରାଇ ଦେଇଛନ୍ତି । ସେ କ'ଣ ମାଆ ପରି କେତେ କଥା ଅନୁଭବ କରି ନ ଥିବେ ଏବଂ ତୁମର ଚରିତ୍ର ବର୍ଣ୍ଣନା କରିବାପାଇଁ କେତେ ଖୋରାକ ନିଜ ଅନୁଭୂତିରୁ ପାଇ ନ ଥିବେ ? ଯାହା ହେଉ,

ସେ ଆଧୁନିକ ସମାଜର ରୂପ ଯେପରି ଭାବରେ ବର୍ଣ୍ଣନା କରିଛନ୍ତି, ତାହା ଓଡ଼ିଆ ଉପନ୍ୟାସ ଜଗତରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଆସ କାବେରି ! ଆମେ ମିଳିମିଶି ଯିବା । ମୋତେ ବାଦ୍ ଦେଇ ଯେପରି 'ମାଟିର ମଣିଷ'ର ପରିକଳ୍ପନା ଅସମ୍ଭବ, ତୁମକୁ ବାଦ୍ ଦେଇ ସେହିପରି 'ଅମଡ଼ା ବାଟ'ର ସୃଷ୍ଟି ଅବାସ୍ତବ ହୋଇପଡ଼ିଥାନ୍ତା ।

# ଯୁଦ୍ଧୋତ୍ତର ବିଶ୍ୱକୁ
# ନେହେରୁଙ୍କ ଅବଦାନ

ବିଶ୍ୱବକ୍ଷରେ ପ୍ରଳୟଙ୍କରୀ ଦ୍ୱିତୀୟ ମହାଯୁଦ୍ଧ-ଯବନିକା ପତନ ହେବାର ଅଳ୍ପ ଦିନପରେ ଚାଳିଶ କୋଟି ଜନତା ଅଧ୍ୟୁଷିତ ଭାରତର ସର୍ବପ୍ରଥମ ପ୍ରଧାନମନ୍ତ୍ରୀରୂପେ ଜବାହରଲାଲ ଯେତେବେଳକୁ ବିଶ୍ୱ-ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି, ସେତେବେଳକୁ ବିଶ୍ୱ-ରାଜନୀତିରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହୋଇ ସାରିଥାଏ । ଦୀର୍ଘ ଦିନର ଯୁଦ୍ଧରେ ବ୍ୟତିବ୍ୟସ୍ତ ହୋଇପଡ଼ିଥିବା ରାଷ୍ଟ୍ରନାୟକମାନେ ଭବିଷ୍ୟତ ଯୁଦ୍ଧ ସମ୍ଭାବନାରୁ ବିଶ୍ୱକୁ ରକ୍ଷା କରି ସୁଖଶାନ୍ତିମୟ କରି ଗଠନ କରିବାପାଇଁ ବ୍ୟାକୁଳତା ପ୍ରକାଶ କରିଥାନ୍ତି ଏବଂ ଖୁବ୍ ଆନନ୍ଦ ଉତ୍ସାହ ମଧ୍ୟରେ ମିଳିତ ଜାତିସଂଘ ଗଠିତ ହୋଇ ଯାଇଥାଏ । ଇଂଲଣ୍ଡର ଜନସାଧାରଣ ଯୁଦ୍ଧକାଳୀନ ମହାନ୍ ନେତା ଚର୍ଚ୍ଚିଲଙ୍କ ଜାତୀ ସରକାରକୁ ନିର୍ବାଚନରେ ବରଖାସ୍ତ କରି ଶାନ୍ତି ନୀତିର ବିଜୟବାର୍ତ୍ତା ଘୋଷଣା କରିଥାନ୍ତି ।

କିନ୍ତୁ ଅଳ୍ପଦିନ ମଧ୍ୟରେ ବିଶ୍ୱ ସମ୍ମୁଖରେ ଏପରି ଜଟିଳ ସମସ୍ୟାମାନ ସୃଷ୍ଟି ହେଲା ଯେ ଏ ସମସ୍ତ ଆଶା ଆକାଙ୍‌କ୍ଷା ଚୂରମାର ହୋଇଯାଇ ପ୍ରବଳ ନୈରାଶ୍ୟ-ରାହୁ ବିଶ୍ୱକୁ ଗ୍ରାସ କରିବାକୁ ଲାଗିଲା । ଯୁଦ୍ଧ ସମୟରେ ନିଜ ନିଜ ବିଭେଦତା ଭୁଲି ଏକଜୁଟ ହୋଇଥିବା ଇଂଲଣ୍ଡ, ଆମେରିକା, ଫ୍ରାନସ୍ ଓ ରୁଷିଆ ଆଦି ରାଷ୍ଟ୍ରମାନେ ଯୁଦ୍ଧ ପରେ ପରସ୍ପର ବିରୋଧୀ ହୋଇଉଠିଲେ । ରୁଷିଆ ଦିନକୁଦିନ ଅଧିକ

ବଳଶାଳୀ ରାଷ୍ଟ୍ରରେ ପରିଣତ ହୋଇ ଆମେରିକା, ଇଂଲଣ୍ଡ ଆଦି ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରିବାକୁ ଲାଗିଲା ଏବଂ ଅପର ପକ୍ଷରେ କମ୍ୟୁନିଷ୍ଟ-ପ୍ରସାର ରୋକିବା ପାଇଁ ଆମେରିକା ଓ ଇଂଲଣ୍ଡ ଆଦି ଶକ୍ତିମାନେ ଦୃଢ଼ପରିକର ହେଲେ ।

ପୂର୍ବ-ୟୁରୋପରେ କମ୍ୟୁନିଷ୍ଟବାଦର ପ୍ରସାର ହୋଇ ହଙ୍ଗେରୀ, ପୋଲଣ୍ଡ, ଯୁଗୋସ୍ଲୋଭିଆ ଆଦି ରାଷ୍ଟ୍ରମାନେ କମ୍ୟୁନିଷ୍ଟ ରାଷ୍ଟ୍ରରେ ପରିଣତ ହୋଇଯିବାରୁ, ଏଣେ ଏସିଆ ମହାଦେଶରେ ଚୀନ୍ ଆଦି ଦେଶରେ କମ୍ୟୁନିଷ୍ଟମାନେ ବିପ୍ଳବ ଆରମ୍ଭ କରିଦେବାରୁ ୟୁରୋପର ପୁଞ୍ଜିବାଦୀ ରାଷ୍ଟ୍ରମାନେ କମ୍ୟୁନିଷ୍ଟ ଆକ୍ରମଣ ଭୟରେ ଆତଙ୍କ ଗଣିଲେ ଏବଂ ସେମାନଙ୍କୁ ଏଭଳି ଭବିଷ୍ୟତ ଆକ୍ରମଣରୁ ରକ୍ଷା କରିବା ବାହାନାରେ ଯୁକ୍ତରାଷ୍ଟ୍ର ଆମେରିକା ୟୁରୋପ ଓ ଏସିଆ ମହାଦେଶରେ ନିଜ ଆସ୍ଥାନ ଦୃଢ଼ୀଭୂତ କରି 'ନାଟୋ,' 'ସିଆଟୋ', 'ସିଣ୍ଟୋ', 'ଆନଜସ୍' ଆଦି ସାମରିକ ଚୁକ୍ତିରେ ବିଭିନ୍ନ ରାଷ୍ଟ୍ରଙ୍କୁ ଆବଦ୍ଧ କରି ପକାଇଲା ।

ଏହାପରେ ଦ୍ୱିତୀୟ ମହାଯୁଦ୍ଧ ଅବସାନର ଅଳ୍ପ କେତେଟା ବର୍ଷ ମଧ୍ୟରେ ପୃଥିବୀ ଦୁଇ ପରସ୍ପର ବିରୋଧୀ ଗୋଷ୍ଠୀରେ ବିଭକ୍ତ ହୋଇଗଲା ଓ ଏହି ଦୁଇ ଗୋଷ୍ଠୀ ମଧ୍ୟରେ ଅନବରତ ଶୀତଳଯୁଦ୍ଧ ଲାଗିରହିଲା । ଏହି ଦୁଇ ଗୋଷ୍ଠୀ ମଧ୍ୟରେ ପ୍ରବଳ ଉତ୍ତେଜନା ଓ ସଂଘର୍ଷ ସୃଷ୍ଟିହେବା ସଙ୍ଗେ ସଙ୍ଗେ ତୀବ୍ର ସାମରିକ ଓ ଆଣବିକ ପ୍ରତିଯୋଗିତା ଲାଗିରହିଲା । ଫଳରେ ରୁଷିଆ ଓ ଆମେରିକା ଉଭୟ ଗୋଷ୍ଠୀ-ହସ୍ତରେ ବହୁ ଧ୍ୱଂସ ମାରାତ୍ମକ ଆଣବିକ ଓ ଉଦ୍‌ଜାନ ବୋମା ମହଜୁଦ୍ ରହି ତୃତୀୟ ଓ ଶେଷ ବିଶ୍ୱଯୁଦ୍ଧର ଭୟସଞ୍ଚାର କରାଇଲା ।

ବିଶ୍ୱ ଇତିହାସରେ ଏଭଳି ଆଦର୍ଶଗତ ବିଭେଦ କେବେ ସୃଷ୍ଟି ହୋଇ ନ ଥିଲା । ଏଭଳି ସାମରିକ ପ୍ରତିଯୋଗିତା କେବେ ସଂଘଟିତ ହୋଇ ନ ଥିଲା । ଏଭଳି ଭୟଙ୍କର ପରମାଣୁ ଓ ଉଦ୍‌ଜାନ ବୋମା ପୃଥିବୀରେ କେବେ ଗଚ୍ଛିତ ନ ଥିଲା । ଏ ବିଶ୍ୱର ପ୍ରତିକୋଣରେ ଏପରି ଉତ୍ତେଜନା ଓ ସଂଘର୍ଷ କେବେ ଦେଖାଯାଇ ନ ଥିଲା । ବିଶ୍ୱ ଏକ ଅଭୂତପୂର୍ବ ପରିସ୍ଥିତିର ସମ୍ମୁଖୀନ ହେଲା ଯାହାର ଭୟାବହ ପରିଣାମ ଚିନ୍ତା କରି ବାର୍ଟାଣ୍ଡ ରସେଲଙ୍କ ଭଳି ଦାର୍ଶନିକ-ମାନେ ବି ବ୍ୟତିବ୍ୟସ୍ତ ହୋଇପଡ଼ିଲେ ।

ପୃଥିବୀର ଏହି ଜଟିଳ ପରିସ୍ଥିତିରେ ଜବାହରଲାଲ ଭାରତର ଦକ୍ଷ ନେତୃତ୍ୱ ନେଇ ବିଶ୍ୱର ଭାରସାମ୍ୟ ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଏହି ବିବଦମାନ ପରସ୍ପରବିରୋଧୀ ଦୁଇଗୋଷ୍ଠୀ ମଧ୍ୟରୁ କୌଣସି ଏକ ଗୋଷ୍ଠୀରେ ଯୋଗ ନ ଦେଇ ଭାରତକୁ ନିରପେକ୍ଷ ରାଷ୍ଟ୍ରରୂପେ ଘୋଷଣା କରିବା ସଙ୍ଗେ ସଙ୍ଗେ ନୂତନ ହୋଇ ସ୍ୱାଧୀନ ହେଉଥିବା ଏସିଆ ଆଫ୍ରିକାର ରାଷ୍ଟ୍ରମାନଙ୍କୁ "ପଞ୍ଚଶୀଳ" ନୀତିରେ ଉଦ୍‌ବୁଦ୍ଧ କରାଇଲେ । ଏସିଆ ମହାଦେଶରେ ଭାରତ ନିଜର ଆୟତନ ଏବଂ ଲୋକସଂଖ୍ୟାଦୃଷ୍ଟିରୁ ଏକ ଗୁରୁତ୍ୱ-ପୂର୍ଣ୍ଣ ସ୍ଥାନ ଅଧିକାର କରିଥିବାରୁ ଏହାକୁ ନିଜ ନିଜ ଗୋଷ୍ଠୀ ଆଡ଼କୁ ଟାଣିବାପାଇଁ ଉଭୟ ଆମେରିକା ଓ ରୁଷିଆ-ଗୋଷ୍ଠୀ ପ୍ରବଳ ଚେଷ୍ଟା କରିଥିଲେ; କିନ୍ତୁ ଭାରତ କୌଣସି ଶକ୍ତି-ଗୋଷ୍ଠୀରେ ଯୋଗ ଦେବ ନାହିଁ ବୋଲି ନେହେରୁ ସ୍ପଷ୍ଟଭାବରେ ଘୋଷଣା କରି ଏକ ସ୍ୱତନ୍ତ୍ର ନିରପେକ୍ଷ ବୈଦେଶିକ ନୀତି ଅନୁସରଣ କଲେ ।

ରୁଷିଆର ହଙ୍ଗେରୀ ଆକ୍ରମଣ ଓ ଏକ ଶତ ମେଗାଟନ୍ ଶକ୍ତି-ବିଶିଷ୍ଟ ଉଦ୍‌ଜାନ ବୋମା ବିସ୍ଫୋରଣକୁ ନାପସନ୍ଦ କରିବା ସଙ୍ଗେ

ସଙ୍ଗେ ସଙ୍ଗେ ଇଂଲଣ୍ଡର ସୁଏଜ୍ ଆକ୍ରମଣ ଓ ଆମେରିକାର 'ସିଣ୍ଟୋ' 'ସିଆଟୋ' ଆଦି ସାମରିକ ମେଣ୍ଟ ଗଠନକୁ ତୀବ୍ର ନିନ୍ଦା କରିଥିଲେ । ଏସିଆ ଆଫ୍ରିକାର ପରାଧୀନ ରାଷ୍ଟ୍ରମାନଙ୍କୁ ମୁକ୍ତ ଦେବାପାଇଁ ବିଶ୍ୱ ଜନମତ ସୃଷ୍ଟି କରିବାରେ ସେ ଅଗ୍ରଣୀ ଥିଲେ । ଇଣ୍ଡୋନେସିଆର ସ୍ୱାଧୀନତା ପ୍ରାପ୍ତିଠାରୁ ଆରମ୍ଭ କରି କଙ୍ଗୋ, କେନିଆ, ଆଲ୍‌ଜେରିଆ ଆଦି ଦେଶର ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ସବୁଥିରେ ନେହେରୁଙ୍କର ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ସାହାଯ୍ୟ ସହଯୋଗ ରହିଛି । ଚୀନ୍‌କୁ ଜାତି-ସଂଘରେ ସ୍ଥାନ ଦେବାପାଇଁ ଦୃଢ଼ ଦାବି ଜଣାଇବା ସଙ୍ଗେ ସଙ୍ଗେ ଦକ୍ଷିଣ ଆଫ୍ରିକା ସରକାରଙ୍କ ବର୍ଣ୍ଣବିଦ୍ୱେଷ-ନୀତି ହେତୁ ତାଙ୍କୁ ରାଜ୍ୟଗୋଷ୍ଠୀରୁ ବିତାଡ଼ିତ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟରେ ସେ ସ୍ୱାଧୀନ ଓ ନିରପେକ୍ଷ ମତ ପ୍ରକାଶ କରିଯାଇଛନ୍ତି । ସେ ଉଭୟ ମସ୍କୋ ଓ ୱାସିଂଟନରେ ଏକାଧିକ ଥର ବିପୁଳ ସମ୍ବର୍ଦ୍ଧନା ଲାଭ କରିଥିଲେ ମଧ୍ୟ କାହାରି ପ୍ରଭାବରେ ପ୍ରଭାବିତ ହୋଇ ନିରପେକ୍ଷ ନୀତିରୁ ଟଳି ନ ଥିଲେ । ଚୀନ୍ ସରକାର ଭାରତ ସୀମା ଉପରେ ନଗ୍ନ ଆକ୍ରମଣ ଚଳାଇବା ପରେ ମଧ୍ୟ ଜାତିସଂଘରେ ଚୀନ୍‌ର ସଭ୍ୟପଦ ପ୍ରଦାନ ପ୍ରସ୍ତାବକୁ ସେ ଦୃଢ଼ଭାବରେ ସମର୍ଥନ କରି ଏବଂ ଆମେରିକାଠାରୁ ସେହି ଦୁଃସମୟରେ ପ୍ରଭୂତ ସାହାଯ୍ୟ ଲାଭ କରି ମଧ୍ୟ ଭାରତ ମହାସାଗରରେ ସପ୍ତମ ନୌବାହିନୀ ପ୍ରବେଶକୁ ବିରୋଧ କରି ସେ ନିରପେକ୍ଷ ନୀତିର ଯଥାର୍ଥତା ପ୍ରତି-ପାଦନ କରିଯାଇଛନ୍ତି ।

ଯେଉଁ ରାଷ୍ଟ୍ରମାନେ କୌଣସି ସାମରିକ ମେଣ୍ଟରେ ଯୋଗ ନ ଦେଇ ନିରପେକ୍ଷ ନୀତିରେ ବିଶ୍ୱାସ କରୁଥିଲେ ସେମାନଙ୍କୁ ସଂଘଟିତ କରି ନିରପେକ୍ଷ ନୀତିର ଯଥାର୍ଥ ବ୍ୟାଖ୍ୟା କରିବା ସଙ୍ଗେ ସଙ୍ଗେ ବିଶ୍ୱ ସମସ୍ୟାଗୁଡ଼ିକୁ ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର

କରି ସେଗୁଡ଼ିକର ସମାଧାନପାଇଁ ଶକ୍ତ ରାଷ୍ଟ୍ରମାନଙ୍କ ନିକଟରେ ନୈତିକ ପ୍ରଭାବ ପକାଇବାପାଇଁ "ବାନ୍ଦୁଂ"ଠାରେ ଏସିଆ ଆଫ୍ରିକା ରାଷ୍ଟ୍ର-ସମ୍ମିଳନୀ ଏବଂ ବେଲ୍‌ଗ୍ରେଡ଼୍, କାଇରୋ ଆଦି ସ୍ଥାନରେ ନିରପେକ୍ଷ ରାଷ୍ଟ୍ର-ସମ୍ମିଳନୀ (କାଇରୋ ସମ୍ମିଳନୀ ବେଳକୁ ସେ ଇହଧାମ ତ୍ୟାଗ କରିଥିଲେ) ଆହୂତ ହୋଇଥିଲା । ଐତି-ହାସିକ "ବାନ୍ଦୁଂ" ସମ୍ମିଳନୀରେ ସେ ପ୍ରସିଦ୍ଧ "ପଞ୍ଚଶୀଳ" ନୀତି ବଖ୍ୟାନ କରିଥିଲେ ଏବଂ ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇ-ଥିଲା । ବେଲଗ୍ରେଡ଼ ନିରପେକ୍ଷ ରାଷ୍ଟ୍ର-ସମ୍ମିଳନୀର ପ୍ରସ୍ତାବକ୍ରମେ ପରମାଣୁ ଅସ୍ତ୍ର ପରୀକ୍ଷା ନିରୋଧପାଇଁ ରୁଷିଆ ଓ ଆମେରିକା ସରକାରଙ୍କ ଉପରେ ନୈତିକ ପ୍ରଭାବ ପକାଇବା ନିମିତ୍ତ ନେହେରୁ ଓ୍ୱାସିଂଟନକୁ ଏବଂ ସୁକର୍ଣ୍ଣ ମସ୍କୋକୁ ଯାତ୍ରା କରିଥିଲେ ଏବଂ ଏହାର ପ୍ରଭାବରେ ବହୁ ଆକାଙ୍‌କ୍ଷିତ ଆଂଶିକ ପରମାଣୁ ଅସ୍ତ୍ରପରୀକ୍ଷା ନିରୋଧ ଚୁକ୍ତି ସଂପାଦିତ ହୋଇ ପାରିଥିଲା ।

ଏସିଆ ଆଫ୍ରିକାର ସଂଖ୍ୟାଧିକ ରାଷ୍ଟ୍ର ନିରପେକ୍ଷ ନୀତି ଗ୍ରହଣ କରିଥିବା ଫଳରେ ଏବଂ ନେହେରୁ, ନାସେର, ସୁକର୍ଣ୍ଣଙ୍କ ପରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନେତାମାନେ ଏହାର ନେତୃତ୍ୱ ନେଇ-ଥିବାରୁ ନିରପେକ୍ଷ ରାଷ୍ଟ୍ରମାନଙ୍କ ମତାମତକୁ ସମ୍ପୂର୍ଣ୍ଣ ଏଡ଼ିଦେଇ କୌଣସି କାର୍ଯ୍ୟ କରିପିବା ମସ୍କୋ କି ଓ୍ୱାସିଂଟନ କାହାରି ପକ୍ଷରେ ସମ୍ଭବ ହୋଇ ନ । ବିଶ୍ୱର ବିଭିନ୍ନ କୋଣରେ ଉପୁଜୁଥିବା ଜଟିଳ ସମସ୍ୟାମାନ ନିରପେକ୍ଷ ରାଷ୍ଟ୍ରମାନଙ୍କ ମଧ୍ୟସ୍ଥତାରେ ସମାହିତ ହୋଇ ବିଶ୍ୱକୁ ଯୁଦ୍ଧମୁଖରୁ ରକ୍ଷା କରିପାରିଛି । କୋରିଆ ଯୁଦ୍ଧଠାରୁ ଆରମ୍ଭ କରି ଲାଓସ୍ ଗଣ୍ଡଗୋଳ ପର୍ଯ୍ୟନ୍ତ ବହୁ ଜଟିଳ ସମସ୍ୟାର ସମାଧାନପାଇଁ ନେହେରୁଙ୍କ ମଧ୍ୟସ୍ଥତା ଆବଶ୍ୟକ ପଡ଼ିଥିଲା ଏବଂ ତାଙ୍କର ସୁଚିନ୍ତିତ ମତପ୍ରତି ଉଭୟ ଗୋଷ୍ଠୀର ସମ୍ମାନ ରହିଥିଲା ।

ଏହି ଶାନ୍ତିପ୍ରିୟ ମହାନ୍ ନେତା ଯୁଦ୍ଧବିଗ୍ରହକୁ ଅନ୍ତର ସହ ଘୃଣା କରୁଥିଲେ ଏବଂ ପରମାଣୁ ଶକ୍ତିର ଶାନ୍ତିପୂର୍ଣ୍ଣ ବିନିଯୋଗ ପାଇଁ ବିଶ୍ୱବାସୀଙ୍କୁ ଏକାଧିକ ସଭାସମିତିରେ ପ୍ରାଣର ଆବେଗସହକାରେ ନିବେଦନ ଜଣାଉଥିଲେ । ସମସ୍ୟା ଯେତେ ବଡ଼ ଜଟିଳ ହେଉନା କାହିଁକି ତାହାର ଆଲୋଚନାଦ୍ୱାରା ସମାଧାନ ହୋଇ ପାରିବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ମିଳିତ ଜାତିସଂଘ ପ୍ରତି ତାଙ୍କର ଗଭୀର ଆସ୍ଥା ଥିଲା ଏବଂ ଏହି ମହତ୍ ଆନ୍ତର୍ଜାତିକ ଅନୁଷ୍ଠାନ ଠିକ୍ ଭାବରେ ଗୃହୀତ ହେଲେ ବିଶ୍ୱରୁ ଯୁଦ୍ଧର ଆଶଙ୍କା ଦୂର ହୋଇ ଶାନ୍ତି ସ୍ଥାପିତ ହୋଇ ପାରିବ ବୋଲି ସେ ଭାବୁଥିଲେ । ଜାତିସଂଘର ପ୍ରତ୍ୟେକ କାର୍ଯ୍ୟରେ ଭାରତ ଯଥାଶକ୍ତି ସାହାଯ୍ୟ କରିଛି ଏବଂ ଭାରତର ସୈନ୍ୟବାହିନୀ ଜାତିସଂଘ ପକ୍ଷରୁ ସୁଦୂର କଙ୍ଗୋରେ ଯୁଦ୍ଧ କରି ବୀରତ୍ୱସହକାରେ ଆତ୍ମବଳି ଦେଇଛନ୍ତି ।

ପୁନଶ୍ଚ ଏସିଆ ଆଫ୍ରିକାର ବିଭିନ୍ନ ଦେଶରେ ସାମରିକ ଏକଛତ୍ରବାଦ ମୁଣ୍ଡ ଟେକି ଗଣତନ୍ତ୍ରକୁ ଗ୍ରାସ କରିଯାଉଥିବା ବେଳେ, ୪୦ କୋଟି ଜନତାର ଏହି ବିରାଟ ଉପମହାଦେଶରେ ଗଣତନ୍ତ୍ରର ନିରବଚ୍ଛିନ୍ନ ପରୀକ୍ଷା ଚଳାଇ ଏବଂ ନିଜ ଜୀବଦ୍ଦଶା ମଧ୍ୟରେ ତିନି ତିନିଟା ସାଧାରଣ ନିର୍ବାଚନ ସଫଳତାସହକାରେ ସଂପାଦନ କରାଇ ବିଶ୍ୱରେ ଆଦର୍ଶ ସେ ରଖି ଯାଇଛନ୍ତି ।

କମ୍ୟୁନିଷ୍ଟ ଓ କ୍ୟାପିଟାଲିଷ୍ଟ ରାଷ୍ଟ୍ରମାନଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିର ଆବଶ୍ୟକତା ପ୍ରମାଣିତ କରାଇଥିଲେ ଏବଂ ଏକ ଆଣବିକ ବିଶ୍ୱଯୁଦ୍ଧର ଆଶଙ୍କା ଦୂର କରାଇ ଏକ ପ୍ରଗତିଶୀଳ ସୁଖସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ବିଶ୍ୱ ଗଠନପାଇଁ ଆନ୍ତରିକ ଉଦ୍ୟମ ଜୀବନସାରା ଚଳାଇଥିଲେ ।

ଏହି ଧ୍ୱଂସାଜର୍ଜରିତ ପୃଥିବୀରେ ପଞ୍ଚଶୀଳ ମନ୍ତ୍ର ଉଚ୍ଚାରଣ କରି ଶାନ୍ତିବାରି ବର୍ଷଣ କରି ଯାଇଥିବା ଲୀଳ ଗୋଲାପର ଭକ୍ତ, ମହାନ୍ ପ୍ରକୃତିପୂଜାରୀ ବିଶ୍ୱପ୍ରେମିକ ନେତା ଜବାହରଲାଲ ଜୀବନର ଶେଷ ମୁହୂର୍ତ୍ତରେ ଚୀନ୍‌ର ସଙ୍ଗୀନ୍ ମୁନରେ ଲାଞ୍ଛିତ ହୋଇ ଏବଂ ଭାରତର ସାମରିକ ଶକ୍ତିର ଅଭିବୃଦ୍ଧି ନ କରିଥିବା ହେତୁ ନିଜ ଦେଶବାସୀଙ୍କଦ୍ୱାରା ସମାଲୋଚିତ ହୋଇ ମଧ୍ୟ ସମଗ୍ର ବିଶ୍ୱର ମଙ୍ଗଳପାଇଁ ଯେପରି ଏ ସମସ୍ତ ଲାଞ୍ଛନା ଓ ସମାଲୋଚନାକୁ ଭ୍ରୂକ୍ଷେପ ନ କରି ସାମରିକ ଶକ୍ତିର ତୀବ୍ର ନିନ୍ଦା କରିବା ସଙ୍ଗେ ସଙ୍ଗେ ଶାନ୍ତିର ଜୟଗାନ କରି ଯାଇଛନ୍ତି, ତାହାର ମହତ୍ତ୍ୱ ଆଜିର ଅପଦାର୍ଥମାନେ ବୁଝି ନ ପାରିଲେ ହେଁ ଭବିଷ୍ୟତ ବିଶ୍ୱବାସୀ ଉପଲବ୍ଧି କରି ଏ ଶତାବ୍ଦୀର ଏହି ମହାନ୍ ଶାନ୍ତି-ଦୂତଙ୍କ ଗଳାରେ ଜୟମାଲ୍ୟ ଅର୍ପଣ କରିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

**ଜୟ ଜଗନ୍ନାଥ୍**

# ଏସିଆର ନେତୃତ୍ୱ

ଏସିଆ ମହାଦେଶ ଆୟତନ ଓ ଲୋକସଂଖ୍ୟାରେ ପୃଥିବୀରେ ବୃହତ୍ତମ ମହାଦେଶ ହୋଇଥିଲେ ମଧ ଏହା ଶତ-ଶତ-ବର୍ଷଧରି ୟୁରୋପୀୟମାନଙ୍କଦ୍ୱାରା ଶୋଷିତ ଓ ଶାସିତ ହୋଇ ଆସିଅଛି ଏବଂ ଏସିଆ ମହାଦେଶରୁ ଲୁଣ୍ଠିତ ଧନରେ ୟୁରୋପର ରାଜକୋଷ ପରିପୂର୍ଣ୍ଣ ହୋଇଛି । ୟୁରୋପର ବିଭିନ୍ନ ଜାତି ଏସିଆର ବିଭିନ୍ନ ଦେଶରେ ପ୍ରବେଶ କରି ବାଣିଜ୍ୟ ବ୍ୟବସାୟ କରିବା-ମାଧ୍ୟମରେ ଶାସକ ହୋଇ ବସି ଏହାର ଅତୁଳ ପ୍ରାକୃତିକ ସମ୍ପଦକୁ ଲୁଟ୍ କରିବା ସଙ୍ଗେ ସଙ୍ଗେ ଏହାର୍ କୋଟି କୋଟି ସନ୍ତାନମାନଙ୍କୁ ନାନାଦି ଭାବରେ ନିର୍ଯ୍ୟାତିତ କରିଛନ୍ତି । ଏସିଆକୁ ଶୋଷଣ କରି ୟୁରୋପୀୟ ସାମ୍ରାଜ୍ୟବାଦିମାନେ ନିଜ ନିଜ ଦେଶରେ ସ୍ୱର୍ଗପୁରୀ ରଚନା କରିଛନ୍ତି । ଏହା ଫଳରେ ଆଜି ଏସିଆ ମହାଦେଶର ପ୍ରତ୍ୟେକ ରାଷ୍ଟ୍ର ଅନୁନ୍ନତ ଅଥବା ଅଳ୍ପୋନ୍ନତ ଅବସ୍ଥାରେ ରହିଛି ଏବଂ ଏହାର କୋଟି କୋଟି ଅଧିବାସୀ ଦୁଇ ବକ୍ତ ପେଟପୂରି ଖାଇବାକୁ ପା'ନ୍ତିନାହିଁ । ଏସିଆ-ବାସୀଙ୍କ ଅଜ୍ଞତା ଓ ସରଳତାର ସୁଯୋଗ ନେଇ ଧୂର୍ତ୍ତ ମୁଷ୍ଟିମେୟ ୟୁରୋପୀୟ କୋଟି କୋଟି ଏସିଆବାସୀଙ୍କ ପ୍ରଭୁ ହୋଇ ରହିଥିଲେ । ଚୀନାମାନଙ୍କୁ ଅଫିମ ଖୁଆଇ ନିଶାଖୋର କରି ରଖାଯାଇଥିଲା । ଚୀନ୍ ସରକାର ଇଂରେଜମାନଙ୍କଠାରୁ ଅଫିମ କ୍ରୟ ନ କରିବାରୁ ବ୍ରିଟିଶ ସରକାର ଚୀନ୍ ବିରୁଦ୍ଧରେ "ଓପିୟମ୍ ଯୁଦ୍ଧ" କରିଥିବା କାହାରିକୁ ଅଜଣା ନାହିଁ ।

କିନ୍ତୁ ଚଳିତ ଶତାବ୍ଦୀର ଆରମ୍ଭରେ ଏସିଆ ମହାଦେଶସାରା ଯେଉଁ ନୂତନ ଜାଗରଣ ଦେଖାଗଲା, ତାହା ୟୁରୋପୀୟମାନଙ୍କର ଏସିଆରେ ଚିରଦିନ ପ୍ରଭୁ ହୋଇ ରହିବାର ସୁଖସ୍ୱପ୍ନକୁ କୁଠାରାଘାତ କଲା । ଏହି ସ୍ୱାଭାବିକ ଜାଗରଣକୁ ଦବେଇ ଦେବାପାଇଁ ସେମାନେ ନାନାପ୍ରକାର ଖଳମନ୍ତ୍ର ପ୍ରୟୋଗ କରିଥିଲେ ଓ କେଉଁଠି ନିରସ୍ତ୍ର ଲୋକଙ୍କ ଉପରେ ଅମାନୁଷିକ ଗୁଳି ଚଳାଇ ଆତଙ୍କ ସୃଷ୍ଟି କରୁଥିଲେ; କିନ୍ତୁ ପ୍ରବଳ ଜନଜାଗରଣ ଆଗରେ ୟୁରୋପୀୟ ସାମ୍ରାଜ୍ୟବାଦୀ ଦଲାଲମାନଙ୍କୁ ହାର ମାନିବାକୁ ପଡ଼ିଲା ଏବଂ ଏସିଆ ମହାଦେଶର ଦେଶଗୁଡ଼ିକ ଗୋଟିକ ପରେ ଗୋଟିଏ ସ୍ୱାଧୀନତା ଲାଭ କରିବାକୁ ଲାଗିଲେ । ବର୍ତ୍ତମାନ ଏସିଆର ପ୍ରାୟ ପ୍ରତ୍ୟେକ ଜାତି ପରାଧୀନତା କବଳରୁ ମୁକ୍ତ ହୋଇ ଦେଶଗଠନରେ ଲାଗି ପଡ଼ିଛନ୍ତି; କିନ୍ତୁ ଏସିଆ ମହାଦେଶର ଏହି ସ୍ୱାଭାବିକ ଉନ୍ନତିକୁ ବାଧା ଦେବାପାଇଁ ୟୁରୋପ ଓ ଆମେରିକା ମହାଦେଶର ରାଜନୀତିଜ୍ଞମାନେ ହୀନ ଚକ୍ରାନ୍ତ ଆରମ୍ଭ କରି ଦେଇଛନ୍ତି ଏବଂ ଏସିଆର ବହୁ ରାଷ୍ଟ୍ର ଏହି ଚକ୍ରାନ୍ତର ଶିକାର ହୋଇପଡ଼ିଲେଣି ।

ୟୁରୋପୀୟ ରାଷ୍ଟ୍ରନୀତିଜ୍ଞମାନେ ଏସିଆର ଲୋକଚରିତ୍ରର ଗୋଟିଏ ବଡ଼ ଦୁର୍ବଳତା ଲକ୍ଷ୍ୟ କରିଛନ୍ତି — ତାହା ହେଉଛି ଏକତାର ଅଭାବ । ଆମ ଭାରତବର୍ଷର ଇତିହାସ ଆଲୋଚନା କଲେ ଦେଖିବା ଯେ ଏହି ଏକତାର ଅଭାବହିଁ ଏ ଦେଶକୁ ପରାଧୀନତାର ବେଢ଼ି ପିନ୍ଧାଇ ଥିଲା । ତକ୍ଷଶିଳାର ଶାସକ ଅମ୍ଭି ପୁରୁରାଜଙ୍କୁ ସାହାଯ୍ୟ କରିଥିଲେ ଆଲେକଜାଣ୍ଡାର ପୃଥିବୀବିଜେତା ହେବାର ଗୌରବ ଲାଭ କରି ନ ଥାନ୍ତେ । ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କ ବିବାଦ ଫଳରେ ଏ ଦେଶରେ ମୁସଲମାନ ରାଜତ୍ୱର ମୂଳ ଭିତ୍ତି ସ୍ଥାପିତ ହୋଇ

ପାରିଥିଲା । ସେହିପରି ସିରାଜ ଉଦ୍ଦୌଲାଙ୍କ ଅକୃତଜ୍ଞ ସେନାପତି ମୀରଜାଫରଙ୍କ ଷଡ଼ଯନ୍ତ୍ର ଓ ବିଶ୍ୱାସଘାତକତା ଯୋଗୁ ହିଁ କ୍ଲାଇବ୍ ପଲାସୀ ଯୁଦ୍ଧରେ ବିଜୟଲାଭ କରି ଇଂରେଜ ସାମ୍ରାଜ୍ୟ ସ୍ଥାପନର ଶୁଭ ଦେଲେ । ଟିପୁ ସୁଲତାନଙ୍କୁ ନିଜାମ ଓ ମରହଟ୍ଟାମାନେ ସାହାଯ୍ୟ କରିଥିଲେ ଇଂରେଜମାନଙ୍କର ନିଶ୍ଚୟ ପରାଜୟ ହୋଇ-ଥାନ୍ତା, ଏଥିରେ ସନ୍ଦେହର ଅବକାଶ ନାହିଁ । ସିପାହୀବିଦ୍ରୋହ-ବେଳେ ପାତିଆଲା ରାଜା ଓ ନିଜାମ ଆଦି ଯେପରି ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ ତାହା କାହାରିକୁ ଅଜଣା ନାହିଁ ।

ଏହି ଦୁର୍ବଳତାର ସୁଯୋଗ ନେଇ ଇଂରେଜ ଶାସକମାନେ ଭାରତ ଛାଡ଼ିଯିବା ପୂର୍ବରୁ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ କଳିମଞ୍ଜି ପୋତି ଏହି ଉପମହାଦେଶକୁ ଦୁଇଭାଗ କରିବାପାଇଁ ଚେଷ୍ଟା କଲେ ଓ ସଫଳୀକୃତ ହୋଇ ପାରିଲେ । ଶତ ଶତ ବର୍ଷଧରି ଭାଇ ଭାଇ ପରି ଏକତ୍ର ଚଳି ଆସୁଥିବା ଏ ହିନ୍ଦୁ ମୁସଲମାନମାନେ ଯେତେବେଳେ ନିଜ ନିଜ ମଧ୍ୟରେ ଯୁଦ୍ଧ କରି ହଣାହଣି ହେଉଛନ୍ତି, ସେତେବେଳେ ଏହି ୟୁରୋପୀୟ ବନ୍ଧୁମାନେ ଦାନ୍ତରେ ଲୁଗା କାମୁଡ଼ି ହସୁଛନ୍ତି ଓ ବେଳେ ବେଳେ ଭଦ୍ରଲୋକ ସାଜି ଉପସ୍ଥିତ ହେଉଛନ୍ତି । ଭାରତ ଓ ପାକିସ୍ଥାନ ଉଭୟ ଦେଶର ଆର୍ଥିକ ମାନଦଣ୍ଡ ଭାଙ୍ଗି ସେମାନଙ୍କୁ ଭିକ୍ଷାଝୁଲି ଧରାଇବାପାଇଁ ଏହା ଏକ କୌଶଳ ବ୍ୟତୀତ ଆଉ କିଛି ନୁହେଁ । ଭିଏତନାମ, କୋରିଆ ଆଦି ଏସିଆର ଦେଶଗୁଡ଼ିକୁ ମଧ୍ୟ ଏହିପରି ୟୁରୋପ ଓ ଆମେରିକା ମହାଦେଶର ସ୍ୱାର୍ଥସିଦ୍ଧିପାଇଁ ଭାଗ ଭାଗ କରାଯାଇଛି । ୟୁରୋପର ଉଭୟ କମ୍ୟୁନିଷ୍ଟ ଓ ପୁଞ୍ଜିବାଦୀ ଶକ୍ତି ଏସିଆ ମହାଦେଶକୁ କବଳରେ ରଖିବାପାଇଁ ବ୍ୟଗ୍ର ।

ୟୁରୋପ ମହାଦେଶର ନୂତନ ସମସ୍ୟା—ଏସିଆର ରାଷ୍ଟ୍ରମାନଙ୍କୁ ଆତ୍ମନିର୍ଭରଶୀଳ କରାଇ ନ ଦେବାପାଇଁ ୟୁରୋପୀୟ ନେତାମାନେ ଆମେରିକା ସହିତ ସହଯୋଗ କରି ଏସିଆ ଭୂଖଣ୍ଡରେ ନାନା ବିଭେଦ ସୃଷ୍ଟି କରୁଥିବା ବେଳେ, ୟୁରୋପ୍ ମହାଦେଶ ଯେ ଏହା ମଧ୍ୟରେ ଆମେରିକାର କବଳିତ ହୋଇ ସାରିଲାଣି, ଏହା ସେମାନଙ୍କୁ ଜଣା ନାହିଁ ।

ଦ୍ୱିତୀୟ ମହାଯୁଦ୍ଧରେ ୟୁରୋପର ଅର୍ଥନୀତି ବିପର୍ଯ୍ୟୟ ଲାଭ କରିଥିଲା; କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକା ଯୁଦ୍ଧରେ ଯୋଗ ଦେଇଥିଲେ ମଧ୍ୟ ଆମେରିକା ଭୂମିରେ କୌଣସି ଯୁଦ୍ଧ ହୋଇ ନ ଥିବାରୁ ତାହାର ବିଶେଷ କ୍ଷତି ହୋଇ ନ ଥିଲା । ଯୁଦ୍ଧର ଅବସାନ ପରେ ୟୁରୋପୀୟ ରାଷ୍ଟ୍ରମାନେ ନିଜ ନିଜର ଆର୍ଥନୀତିକ ପୁନରୁତ୍ଥାନପାଇଁ ଆମେରିକା ଉପରେ ନିର୍ଭର କରିବାକୁ ବାଧ୍ୟ ହେଲେ । ପୁନଶ୍ଚ ରୁଷିଆ ଏକ ବିରାଟ ଶକ୍ତିରେ ପରିଣତ ହୋଇ ପୂର୍ବ ୟୁରୋପୀୟ କ୍ଷୁଦ୍ର ରାଷ୍ଟ୍ରମାନଙ୍କୁ କବଳିତ କରି ରଖିବାରୁ ୟୁରୋପର ଅନ୍ୟାନ୍ୟ ଦେଶମାନେ କମ୍ୟୁନିଷ୍ଟ ଆକ୍ରମଣର ଆଶଙ୍କା ପୋଷଣ କଲେ; କିନ୍ତୁ ଏଭଳି ଏକ ଆକ୍ରମଣର ମୁକାବିଲା ଦେବା ଆମେରିକାର ବିନା ସାହାଯ୍ୟରେ ସମ୍ଭବ ନୁହେଁ ବୋଲି ଆମେରିକା ପକ୍ଷରୁ କୂଟନୈତିକ ପ୍ରଚାର ହେଲା । ତେଣୁ କମ୍ୟୁନିଷ୍ଟ ଆକ୍ରମଣରୁ ରକ୍ଷାପାଇଁ ୟୁରୋପର କମ୍ୟୁନିଷ୍ଟବିରୋଧୀ ରାଷ୍ଟ୍ରମାନ ଆମେରିକା ସହ ସାମରିକ ମେଣ୍ଟ ସ୍ଥାପନ କରି 'ନାଟୋ' ଚୁକ୍ତି ସମ୍ପାଦନ କରିବା ଫଳରେ ଆମେରିକା ସୈନ୍ୟବାହିନୀ ୟୁରୋପକୁ ରକ୍ଷା କରିବା ବାହାନାରେ ଘରିଆଡ଼େ ଖେଳେଇ ହୋଇଗଲେ । ନାଟୋମେଣ୍ଟର କେନ୍ଦ୍ର ଅଫିସ ପ୍ୟାରିସ୍‌ଠାରେ ଖୋଲାହେଲା । ଏଣେ ପୂର୍ବ-ୟୁରୋପୀୟ ରାଷ୍ଟ୍ରମାନେ ରୁଷିଆ ସହ "ୱାରସ୍" ସାମରିକ ମେଣ୍ଟ ସ୍ଥାପନ କଲେ । ଏହାପରେ

ୟୁରୋପ ୟୁରୋପକୁ ହରାଇ ବସିଲା । ୟୁରୋପର କମ୍ୟୁନିଷ୍ଟ ଓ ଅଣ-କମ୍ୟୁନିଷ୍ଟ ରାଷ୍ଟ୍ରମାନଙ୍କ ମଧ୍ୟରେ ଅବିଶ୍ୱାସ, ସନ୍ଦେହ ଓ ଭେଦଭାବ ସୃଷ୍ଟି କରାଇ ଯୁକ୍ତରାଷ୍ଟ୍ର ଆମେରିକା ୟୁରୋପକୁ ନିଜର କଲୋନି-ରୂପେ ବ୍ୟବହାର କରିବାକୁ ଲାଗିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ୟୁରୋପୀୟ ନେତାମାନେ ଏସିଆ ମହାଦେଶରେ ଯେଉଁ ପ୍ରକାର କୌଶଳ ପ୍ରୟୋଗ କରି ଏହି ବିରାଟ ମହାଦେଶକୁ ଗ୍ରାସ କରିଯାଇଥିଲେ, ଆମେରିକା ଅଧିକ ଚତୁରତା ସହିତ ଠିକ୍ ସେହି ନୀତି ୟୁରୋପରେ ପ୍ରୟୋଗ କରି ପରୋକ୍ଷଭାବରେ ଏହାକୁ ଗ୍ରାସ କରିଯାଉଛି ।

**ଏ ଚକ୍ରାନ୍ତ ଡିଗଲ ବୁଝି ପାରିଲେ**— ଫ୍ରାନସ୍‌ର ପ୍ରବୀଣ ରାଷ୍ଟ୍ରନୀତିଜ୍ଞ ଓ ରାଷ୍ଟ୍ରପତି ଡିଗଲ ଆମେରିକାର ଏହି ଚକ୍ରାନ୍ତ ବୁଝି ସତର୍କତା ଅବଲମ୍ବନ କରିବାକୁ ଲାଗିଲେ । ବିଶେଷତଃ ଯେତେ-ବେଳେ ଆଂଶିକ ପରମାଣୁ ଅସ୍ତ୍ରପରୀକ୍ଷା ନିଷେଧ ଚୁକ୍ତିରେ ରୁଷିଆ ଓ ଆମେରିକା ନିଜ ନିଜ ମଧ୍ୟରେ ଥିବା ଶତ୍ରୁତାକୁ କିଛି କ୍ଷଣପାଇଁ ଭୁଲିଯାଇ ବିଶ୍ୱଶାନ୍ତିର ଦାବି ଦେଇ ସ୍ୱାକ୍ଷର କରିବାପାଇଁ ଆଗଭର ହୋଇ ଆସିଲେ, ଡିଗଲଙ୍କର ମନରେ ସନ୍ଦେହ ସୃଷ୍ଟି ହେଲା । ୟୁରୋପର ଅନ୍ୟାନ୍ୟ ରାଷ୍ଟ୍ରମାନେ ପରମାଣୁ ଶକ୍ତିସମ୍ପନ୍ନ ହୋଇଗଲେ ଆଉ ନିରାପତ୍ତା ରକ୍ଷା କରିବାର ଆଳ ଦେଖାଇ ସେମାନଙ୍କୁ କରଗତ କରି ରଖିବା ଆମେରିକା କି ରୁଷିଆ କାହାରି ପକ୍ଷରେ ସମ୍ଭବ ହେବ ନି । ତେଣୁ ୟୁରୋପର ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକୁ ସାମରିକ ଶକ୍ତିରେ ଆତ୍ମନିର୍ଭରଶୀଳ ନ କରାଇ ଦେବାପାଇଁ ରୁଷିଆ ଓ ଆମେରିକାର ଏହା ଏକ ଚକ୍ରାନ୍ତ ବୋଲି ଡିଗଲ ଅନୁଭବ କଲେ ଏବଂ ୟୁରୋପକୁ ନୂତନ ନେତୃତ୍ୱ ଦେବାପାଇଁ ଆଗଭର ହୋଇ-ବାହାରିଲେ ।

ଆମେରିକା ଓ ରୁଷିଆ ଆଦି ପରମାଣୁ ଶକ୍ତିସମ୍ପନ୍ନ ରାଷ୍ଟ୍ରମାନେ ଯେତିକି ଆଣବିକ ବୋମା ପରୀକ୍ଷା କରିଛନ୍ତି, ଫ୍ରାନ୍‌ସର ସେତିକି ଆଣବିକ ବୋମା ପରୀକ୍ଷା କରିବାର ନୈତିକ ଅଧିକାର ଅଛି ବୋଲି ରାଷ୍ଟ୍ରପତି ଡିଗଲ ଯେଉଁ ଯୁକ୍ତି କରିଛନ୍ତି ତାହାକୁ ପୂରାପୂରି ଅଯଥାର୍ଥ କୁହାଯାଇ ନ ପାରେ । ଫ୍ରାନ୍‌ସ କେବଳ ଆଣବିକ ଅସ୍ତ୍ର ପରୀକ୍ଷା ଚଳାଇଲି ନୁହେଁ, ତାହା ସଙ୍ଗେ ସଙ୍ଗେ ନାଟୋ ସଂଗଠନରୁ ଅଲଗା ହୋଇ ଯାଇ ଆମେରିକାକୁ ତା'ର ସୈନ୍ୟମାନଙ୍କୁ ଫ୍ରାନସ୍‌ରୁ ଯଥା-ଶୀଘ୍ର ଉଠାଇ ନେବାକୁ ଜଣାଇ ଦେଲା । ଡିଗଲ ଯୁକ୍ତି କରନ୍ତି ଯେ, ୟୁରୋପର ନିରାପତ୍ତାପାଇଁ ଆମେରିକାର ମୁଣ୍ଡବ୍ୟଥା ହେବା ଆବଶ୍ୟକ ନାହିଁ; ୟୁରୋପ ତାହାର ନିଜ ଗୋଡ଼ରେ ଠିଆ ହୋଇ ଶିଖିବା ଉଚିତ । ଆମେରିକା ନିୟନ୍ତ୍ରଣରୁ ୟୁରୋପକୁ ମୁକ୍ତ କରିବା-ପାଇଁ ଡିଗଲଙ୍କର ଏହି ନୂତନ ଅଭିଯାନ ବିଶ୍ୱରେ ନୂତନ ପରିବର୍ତ୍ତନ ଆନୟନ କରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

**ଏସିଆ ଏବେ ବି ସୁପ୍ତ**—କିନ୍ତୁ ଦୁଃଖର ବିଷୟ, ଏସିଆ ମହାଦେଶ ଏବେ ବି ସୁପ୍ତ ରହିଛି । ଏସିଆ ମହାଦେଶର ରାଷ୍ଟ୍ର-ନାୟକମାନେ ୟୁରୋପ ଓ ଆମେରିକାର ନିୟନ୍ତ୍ରଣରୁ ଏସିଆକୁ ମୁକ୍ତ କରିବାପାଇଁ ଚେଷ୍ଟିତ ଥିବାପରି ଜଣାପଡ଼ୁ ନାହିଁ । ବରଂ ଦିନକୁ ଦିନ ଆମେରିକା ଓ ୟୁରୋପ ଉପରେ ଅଧିକରୁ ଅଧିକତର ନିର୍ଭର କରୁଛନ୍ତି । ଖାଦ୍ୟ, ବସ୍ତ୍ର ଓ ଅସ୍ତ୍ରାଦି ଦେବା ବାହାନାରେ ଏହି ଦୁଇ ମହାଦେଶ ଏସିଆକୁ ଯେପରି କବଳିତ କରି ସାରିଲେଣି ତାହାଠାରୁ ପରାଧୀନ ରହିବା ବରଂ ଶ୍ରେୟସ୍କର । ଏସିଆର କେଉଁ ରାଷ୍ଟ୍ରରେ କିଏ ମନ୍ତ୍ରୀ ହେବେ, କେଉଁ ଦେଶର ବୈଦେଶିକ ନୀତି କିପରି ଗଢ଼ିତ ହେବ, କେଉଁ ଦେଶର ଅର୍ଥନୀତି କିପରି ପରିବର୍ତ୍ତିତ ହେବ,

ତାହା ଓ୍ୱାସିଂଟନ, ଲଣ୍ଡନ ବା ମସ୍କୋର ନେତାମାନଙ୍କ ନିର୍ଦ୍ଦେଶ ଉପରେ ନିର୍ଭର କରୁଥିବା ଗଭୀର ଦୁଃଖର ବିଷୟ । ଭାରତରେ କୃଷ୍ଣମେନନ୍ ଓ ପାକିସ୍ତାନରେ ଭୁଟ୍ଟୋଙ୍କୁ ମନ୍ତ୍ରିମଣ୍ଡଳରୁ ବିତାଡ଼ିତ କରାଯିବା ମୂଳରେ ଓ୍ୱାସିଂଟନର ଅଦୃଶ୍ୟ ହସ୍ତ କାର୍ଯ୍ୟ କରିଥିବାର ପ୍ରକାଶ୍ୟରେ ଜଣାପଡ଼ୁଛି । ସେହିପରି ଭାରତର କେନ୍ଦ୍ର ମନ୍ତ୍ରିମଣ୍ଡଳରୁ କୃଷ୍ଣମେନନ୍ ଓ ମାଳବ୍ୟ ଆଦି ବିଦାୟ ନେବା ପରେ ଆମେରିକା ପକ୍ଷପାତି ମନ୍ତ୍ରୀମାନଙ୍କ ସଂଖ୍ୟା ଅଧିକ ହୋଇଥିବାରୁ ରୁଷିଆ ଅସନ୍ତୁଷ୍ଟ ହୋଇଥିଲା ବୋଲି ଶୁଣାଯାଏ ଓ ତାକୁ ସନ୍ତୁଷ୍ଟ କରିବା-ପାଇଁ କାମରାଜ-ଯୋଜନାଦ୍ୱାରା ମୋରାରଜୀ ଓ ପାଟିଲ ଆଦି ଆମେରିକାପନ୍ଥୀ ମନ୍ତ୍ରୀମାନଙ୍କୁ ବିଦାୟ ଦିଆ ଯାଇଥିଲା ବୋଲି କେତେକ କହନ୍ତି । ଆମେରିକାର ଚାପ ଯୋଗୁ ଭାରତର ମୁଦ୍ରାମୂଲ୍ୟ ହ୍ରାସ କରି ଦିଆଗଲା ବୋଲି ବହୁ ସଭ୍ୟ ପାର୍ଲିଆମେଣ୍ଟରେ ଅଭିଯୋଗ କରିଛନ୍ତି । ଏସିଆ ମହାଦେଶରେ ଓ ଅନେକ ରାଷ୍ଟ୍ରର ସରକାର ଆମେରିକା ଓ ରୁଷିଆଦ୍ୱାରା କାଣ୍ଡୁପିତୁଳୀ ପରି ଚାଳିତ ହେଉଛନ୍ତି ।

## ଏସିଆରେ ରୁଷିଆ ନେତୃତ୍ୱକୁ ଚୀନ୍ ଅସ୍ୱୀକାର

**କଲା**—ଏସିଆର କମ୍ୟୁନିଷ୍ଟ ଆନ୍ଦୋଳନର ନେତୃତ୍ୱ ନେଇ ନୂତନ ହୋଇ କମ୍ୟୁନିଷ୍ଟ ହେଉଥିବା ରାଷ୍ଟ୍ରମାନଙ୍କୁ ପୂର୍ବ ୟୁରୋପର କ୍ଷୁଦ୍ର ରାଷ୍ଟ୍ରମାନଙ୍କ ପରି କବଳିତ କରିବାପାଇଁ ରୁଷିଆ ଯେଉଁ ଚକ୍ରାନ୍ତ କରୁଥିଲା, ତାହା ବିରୁଦ୍ଧରେ ସ୍ୱର ଉଠାଇ ଚୀନ୍ ଫ୍ରାନସ୍ ପରି ଏକ ବୈପ୍ଳବାତ୍ମିକ ପନ୍ଥା ଧରିଛି । ଫଳରେ ଏସିଆରେ ରୁଷିଆର ନେତୃତ୍ୱ ନେବା ପରିକଳ୍ପନା କେତେକାଂଶରେ ବାଧାପ୍ରାପ୍ତ ହୋଇ ଯାଇଛି । ଏସିଆବାସୀଙ୍କ ପକ୍ଷରୁ ୟୁରୋପ ଆମେରିକା ନେତୃତ୍ୱ

ବିରୁଦ୍ଧରେ ଏହା ପ୍ରଥମ ବିଦ୍ରୋହ ଓ ନିଜ ମହାଦେଶର ନେତୃତ୍ୱ ନେବାପାଇଁ ପ୍ରଥମ ଉଦ୍ୟମହିସାବରେ ଅଭିନନ୍ଦନୀୟ ହେଲେ ମଧ୍ୟ ଚୀନ୍‌ର ଯୁଦ୍ଧଖୋର ଏକଜିଦିଆ ସ୍ୱଭାବ ଫଳରେ ଏହାର ପରିଣତି ବିଷମୟ ହେବାପରି ମନେହୁଏ ।

**ଏପରି ପରିସ୍ଥିତିରେ ଭାରତର କର୍ତ୍ତବ୍ୟ—** ସମଗ୍ର ଏସିଆର ନେତୃତ୍ୱ ନେବା ଯେଉଁ ରାଷ୍ଟ୍ରମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରେ, ସେମାନେ ହେଲେ ଚୀନ୍, ଭାରତ, ଜାପାନ ଓ ଇଣ୍ଡୋନେସୀୟା । ଚୀନ୍‌ର ନେତୃତ୍ୱ ବିପଦପୂର୍ଣ୍ଣ ବୋଲି ଆଶଙ୍କା ପ୍ରକାଶ ପାଉଥିବାଦୃଷ୍ଟିରୁ ଏବଂ ଇଣ୍ଡୋନେସୀୟାର ଆଭ୍ୟନ୍ତରୀଣ ପରିସ୍ଥିତି ଜଟିଳ ଅବସ୍ଥା ଧାରଣ କରିଥିବାରୁ କେବଳ ଭାରତ ଓ ଜାପାନ ବର୍ତ୍ତମାନ ଆଶାର ସ୍ଥଳ ଅଟନ୍ତି । ଦ୍ୱିତୀୟ ମହା-ଯୁଦ୍ଧରେ ଜାପାନର ହାତଗୋଡ଼ ଭାଙ୍ଗି ଯାଇଥିବାରୁ ସେ ନିଜକୁ ପୁନର୍ବାର ସୁଦୃଢ଼ କରି ଏସିଆର ନେତୃତ୍ୱ ନେବା ସହଜ ନୁହେଁ ଏବଂ ସମୟସାପେକ୍ଷ । ତେଣୁ ସମଗ୍ର ଏସିଆର ଦୃଷ୍ଟି ଭାରତ ଉପରେ ପଡ଼ିବା ସ୍ୱାଭାବିକ । ସୌଭାଗ୍ୟବଶତଃ ଅତୀତରେ ଭାରତ ସେହିପରି ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପ୍ରତିଭାଶାଳୀ ବ୍ୟକ୍ତିଙ୍କୁ ପ୍ରଧାନ ମନ୍ତ୍ରୀରୂପେ ପାଇଥିଲା ଏବଂ ତାଙ୍କ ନେତୃତ୍ୱରେ ଏସିଆ ଐକ୍ୟବଦ୍ଧ ହେବାର ବହୁ ସମ୍ଭାବନା ଥିଲା; କିନ୍ତୁ ସେହି ବିରାଟ ପ୍ରତିଭାବାନ୍ ଓ ମହାମନୀଷୀ ଜବାହରଲାଲଙ୍କ ତିରୋଧାନ ପରେ ବିଶେଷତଃ ଚୀନ୍ ଭାରତ ସୀମା ଆକ୍ରମଣ କରିବା ପରେ ସେ ଆଶା ଦୂରୀଭୂତ ହୋଇଗଲା । ଏସିଆ ମହାଦେଶରେ ଭାରତର ଦୁର୍ବଳତା ଜଣାଇ ଦେବାପାଇଁ ଚୀନ୍ ଆକ୍ରମଣ କରିଥିଲା । ଭାରତ ଦୁର୍ବଳ ଓ ସମଗ୍ର ଏସିଆର ନେତୃତ୍ୱ ନେବା ତା’ ପକ୍ଷରେ ସମ୍ଭବ ନୁହେଁ

ବୋଲି କେତେକାଂଶରେ ଚୀନ୍ ଆକ୍ରମଣରେ ଭାରତର ପରାଜୟ ଫଳରେ ପ୍ରମାଣିତ ହୋଇଗଲା ଏବଂ ନେହେରୁଙ୍କର ଆନ୍ତର୍ଜାତିକ ପ୍ରତିଷ୍ଠା ଉପରେ ବଡ଼ ଆଞ୍ଚ ଆସିଲା । ପୁନଶ୍ଚ ଭାରତରେ ପ୍ରବଳ ଖାଦ୍ୟାଭାବ, ଆର୍ଥନୀତିକ ଦୁର୍ଗତି ଓ ପାକିସ୍ଥାନ ସହ ବିବାଦ ଫଳରେ ତାହା ପ୍ରତି ଏସିଆ ରାଷ୍ଟ୍ରମାନଙ୍କର ପୂର୍ବ ଭରସା ଓ ଆସ୍ଥା ନ ଥିବା ପରି ଜଣା ପଡ଼ୁଛି । ଯେଉଁ ଦେଶ ନିଜେ ଆତ୍ମନିର୍ଭରଶୀଳ ନୁହେଁ ଓ ଯାହାର ଅର୍ଥମନ୍ତ୍ରୀ ଭିକ୍ଷାଝୁଲି ଧରିନ ଦେଶ ଦେଶ ବୁଲନ୍ତି, ସେ ଦେଶ ଏକ ମହାଦେଶର ନେତୃତ୍ୱ ନେଇ ପାରିବ କିପରି ବା ତା ଉପରେ ଭରସା କରିବ କିଏ ? ଏହି ସବୁ ଦୃଷ୍ଟିରୁ ବିଚାର କରି ଭାରତର ଘରୋଇ ତଥା ବୈଦେଶିକ ନୀତି ପରିମାର୍ଜିତ ହେବା ଦରକାର ଏବଂ ଜାପାନ ସହ ପୂର୍ଣ୍ଣ ସହଯୋଗ ରଖି ଏସିଆ ମହାଦେଶକୁ ନେତୃତ୍ୱ ଦେବାପାଇଁ ଚେଷ୍ଟା ହେବା ଉଚିତ । ନଚେତ୍ ଏସିଆ ମହାଦେଶର ନେତୃତ୍ୱ ଚୀନ୍ ହାତକୁ ଚାଲିଯିବା ଜଳ ଜଳ ଦିଶୁଛି ।

# କ୍ଷୁଦ୍ର ଗଳ୍ପ ବିଷୟରେ ପଦେ

କେତେକ ସମାଲୋଚକଙ୍କ ମତରେ କ୍ଷୁଦ୍ରଗଳ୍ପର ଆକାର କ୍ଷୁଦ୍ର ହେବା ଉଚିତ, ଯେପରି କି ଟ୍ରେନରେ ଯିବା ମଧ୍ୟରେ ସିଗାରେଟଟି ଜଳିଯିବା ଆଗରୁ ଅଥବା ଦଶ ପଇସିଆ ଚେନାଚୁରପୁଡ଼ା ନିଃଶେଷ ହେବା ପୂର୍ବରୁ ପାଠକ ଏହାକୁ ଶେଷ କରି ପାରିବ । ଏହି ଦଳର ସମାଲୋଚକମାନେ ନିଜକୁ ବାସ୍ତବଧର୍ମୀ ରୂପେ ଗର୍ବ କରି ଯୁକ୍ତି ବାଢ଼ି ବସନ୍ତି ଯେ ଆଜିର ସମସ୍ୟା ତଥା ଜଞ୍ଜାଳବହୁଳ ଜୀବନରେ ବଡ଼ ବଡ଼ କାବ୍ୟ ଉପନ୍ୟାସ କିମ୍ବା ନାଟକ ପଢ଼ିବାକୁ ସମୟ ନାହିଁ କି ଧୈର୍ଯ୍ୟ ନାହିଁ । ଯେତେବେଳେ ଦାନାକନାର ଯୋଗାଡ଼ କରିବା ପାଇଁ ବେଶୀ କିଛି କଷ୍ଟ କରିବାକୁ ପଡ଼ୁ ନ ଥିଲା, ଏବଂ ଜୀବନ ଅପେକ୍ଷାକୃତ ସରଳ ଓ ନିରାଡ଼ମ୍ବର ଥିଲା, ସେତେ-ବେଳେ ଲୋକମାନେ ବଡ଼ ବଡ଼ କାବ୍ୟ ଓ ଉପନ୍ୟାସ ପାଠ କରି ରସ ଆସ୍ୱାଦନ କରୁଥିଲେ; କିନ୍ତୁ ଆଜିର କର୍ମବହୁଳ ଓ ଜଞ୍ଜାଳ-ମୟ ଜୀବନରେ ଅଠର ଖଣ୍ଡ ମହାଭାରତ କିମ୍ବା ହଜାର ପୃଷ୍ଠାର ଉପନ୍ୟାସ ପାଠ କରିବାପାଇଁ ସମୟ କି ସୁଯୋଗ ନାହିଁ । ତେଣୁ ଟ୍ରେନ କମ୍ପାର୍ଟମେଣ୍ଟରେ ଅଥବା ଟ୍ରାମ୍‌ ଷ୍ଟଲରେ ଯେତିକି ସମୟ ବସିବାପାଇଁ ମିଳୁଛି ସେହି ସମୟ ମଧ୍ୟରେ ଯେତିକି ପଢ଼ାଯାଇ ପାରିବ ତାକୁ ଦୃଷ୍ଟି ରଖି ସାହିତ୍ୟ ସୃଷ୍ଟି ହେବା ଦରକାର । ଏଥି-ପାଇଁ ଆଜିକାଲି କ୍ଷୁଦ୍ର କବିତା, କ୍ଷୁଦ୍ରଗଳ୍ପ ଓ ଏକାଙ୍କିକା ଆଦର ଆଦର ବୃଦ୍ଧି ପାଉଛି ।

ଆଉ କେତେକ ଶ୍ରେଣୀର ସମାଲୋଚକମାନେ ଭାବନ୍ତି ଯେ କ୍ଷୁଦ୍ରଗଳ୍ପ ଉପନ୍ୟାସର କ୍ଷୁଦ୍ର ସଂସ୍କରଣ । କ୍ଷୁଦ୍ରଗଳ୍ପକୁ ଫେଣେଇ ଫେଣେଇ ଉପନ୍ୟାସରେ ପରିଣତ କରାଯାଇପାରେ ଓ ଉପନ୍ୟାସକୁ ହ୍ରସ୍ୱ କରି କ୍ଷୁଦ୍ରଗଳ୍ପର ସୃଷ୍ଟି କରାଯାଇପାରେ । କିନ୍ତୁ ଏହି ଉଭୟ ମତ ତ୍ରୁଟିପୂର୍ଣ୍ଣ ଥିବାପରି ଜଣାପଡ଼େ । କ୍ଷୁଦ୍ରଗଳ୍ପ ଉପନ୍ୟାସର କ୍ଷୁଦ୍ର ସଂସ୍କରଣ ନୁହେଁ କି ଉପନ୍ୟାସ କ୍ଷୁଦ୍ରଗଳ୍ପର ବୃହତ୍ ସଂସ୍କରଣ ନୁହେଁ । ସେହିପରି କ୍ଷୁଦ୍ରଗଳ୍ପ ଯେ ସବୁବେଳେ କ୍ଷୁଦ୍ର ହେବା ଉଚିତ ଏହା କୁହାଯାଇ ନ ପାରେ । କ୍ଷୁଦ୍ରଗଳ୍ପ ଶତାଧିକ ପୃଷ୍ଠାବ୍ୟାପୀ ହୋଇପାରେ । ଆର୍. ଏଲ୍. ଷ୍ଟିଭେନସନଙ୍କ 'ବୋତଲର ଭୂତ' (Bottle's Imp) କ୍ଷୁଦ୍ରଗଳ୍ପ ବହୁପୃଷ୍ଠାବ୍ୟାପୀ ଅଟେ । କାଳିନ୍ଦୀ ବାବୁଙ୍କର 'ମାଟିର ମଣିଷ'କୁ ବି କେତେକ କ୍ଷୁଦ୍ରଗଳ୍ପର ଆଖ୍ୟା ଦେଇଥାନ୍ତି ।

କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ମଧ୍ୟରେ ବହୁ ପାର୍ଥକ୍ୟ ଦେଖିବାକୁ ମିଳିଥାଏ । ପ୍ରଥମତଃ କ୍ଷୁଦ୍ରଗଳ୍ପ ଉପନ୍ୟାସ ପରି ଚରିତ୍ରବହୁଳ ନୁହେଁ । କ୍ଷୁଦ୍ରଗଳ୍ପରେ ବହୁ ଚରିତ୍ରର ସମାବେଶ ଦେଖିବାକୁ ମିଳେ ନାହିଁ, ମାତ୍ର ଅଳ୍ପ କେତୋଟି ଚରିତ୍ରକୁ ନେଇ କ୍ଷୁଦ୍ରଗଳ୍ପ ରଚନା କରାଯାଇଥାଏ । ନିମ୍ନୋକ୍ତ ଉଦାହରଣରୁ ଏହା ସ୍ପଷ୍ଟ ହୋଇପାରେ— ହିମାଦ୍ରିର ଘନ ଅରଣ୍ୟାନୀ । ଅମା ଅନ୍ଧକାର । ପଥିକ ପଥଭ୍ରଷ୍ଟ । ହଠାତ୍ ବିଜୁଳି ଚକ୍ କରି ମାରି ଦେଇ ଅଦୃଶ୍ୟ ହୋଇଗଲା । ସେହି କ୍ଷୀଣ ଆଲୋକରେ ପଥିକର ସମ୍ମୁଖଭାଗ ଠିକକପାଇଁ ଉଦ୍ଭାସିତ ହୋଇ ଉଠିଲା । ତା' ଆଖି ଆଗରେ କେତୋଟି ଗଛଲତା ଓ ଗୋଟିଏ ସରୁ ବଙ୍କା ରାସ୍ତା ନାଚିଉଠିଲା । ଏହାହିଁ ହେଲା କ୍ଷୁଦ୍ରଗଳ୍ପର ଚରିତ୍ର । ମୁହୂର୍ତ୍ତକ ପାଇଁ ଦିଶିଯାଇ ଅଦୃଶ୍ୟ ହୋଇଯାଇଥିବା ଏହି କେତୋଟି ବୃକ୍ଷଲତା ଓ ରାସ୍ତାଟିକୁ ନେଇ କ୍ଷୁଦ୍ରଗଳ୍ପର ଯୋଜନା

କରାଯାଇପାରେ; କିନ୍ତୁ ଅନ୍ୟ ଜଣେ ପଥିକ ମଶାଲ ଧରି ଅରଣ୍ୟ ପଥରେ ଅଗ୍ରସର ହେଉଛି । ତାହାର ଚକ୍ଷୁ ଆଗରେ ଅସଂଖ୍ୟ ବୃକ୍ଷ, ଗୁଳ୍ମଲତା, ପାହାଡ଼, ପର୍ବତ, ଝରଣା, ପଶୁପକ୍ଷୀ ନାଚ-ଯାଉଛି । ଏ ସବୁକୁ ନେଇ ଉପନ୍ୟାସ ରଚନା କରାଯାଇଥାଏ ।

ପୁନଶ୍ଚ କ୍ଷୁଦ୍ରଗଳ୍ପ ଜୀବନର ଗୋଟିଏ ମୁହୂର୍ତ୍ତର ଅବିସ୍ମରଣୀୟ ଅନୁଭୂତି ଉପରେ ହିଁ ଲିଖିତ ହୋଇଥାଏ । ଏଥିରେ ଜୀବନର ସମସ୍ତ ଅନୁଭୂତି ବର୍ଣ୍ଣନା କରିବାର ସୁଯୋଗ ମିଳେ ନାହିଁ; କିନ୍ତୁ ଉପନ୍ୟାସରେ ଜୀବନର ଆରମ୍ଭ ଠାରୁ ଶେଷ ପର୍ଯ୍ୟନ୍ତ ଅଥବା ଜୀବନର ଅଧିକାଂଶ ଭାଗର ସମସ୍ତ ଘଟଣା ଅଥବା ଅଧିକାଂଶ ଘଟଣା ବର୍ଣ୍ଣିତ ହୋଇଥାଏ । ନିମ୍ନୋକ୍ତ ଉଦାହରଣରୁ କ୍ଷୁଦ୍ରଗଳ୍ପର ଭୂମିକା ବିଷୟରେ ଯଥାର୍ଥ ଧାରଣା ସୃଷ୍ଟି ହୋଇ ପାରିବ ।

ଗରିବ କୃଷକ ରାମ ବେହେରାର ଏକମାତ୍ର ପୁତ୍ର ସୁବ୍ରତ ବାବୁ ବି. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେବା ପରେ ଆଇ. ଏ. ଏସ୍.ର ଲିଖିତ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛନ୍ତି । ଦିଲ୍ଲୀରେ ଓରାଲ୍ ଇଣ୍ଟରଭିଉ ଦେଇ ଆସିବା ପରେ ପ୍ରଥମ ନିଯୁକ୍ତି ମାଜିଷ୍ଟ୍ରେଟ । ରାମ ବେହେରାର ମନ ଆନନ୍ଦରେ ନାଚି ଉଠୁଛି । ସୁବ୍ରତ ବାବୁ ଦିଲ୍ଲୀ ଯାତ୍ରା ଉଦ୍ଦେଶ୍ୟରେ କଟକ ଷ୍ଟେସନରୁ ହାଓଡ଼ା ଅଭିମୁଖେ ଏକ୍ସପ୍ରେସ ଗାଡ଼ି ଧରିଲେ । × × ଖଡ଼୍ଗପୁର ଠାରୁ ଅଳ୍ପ ଦୂରରେ ବିପରୀତ ଦିଗରୁ ଆସୁଥିବା ମାଲଗାଡ଼ି ସହ ଧକ୍କା × × × । ସୁବ୍ରତ ବାବୁ ହାଓଡ଼ା ଡାକ୍ତରଖାନାରେ ଭର୍ତ୍ତି ହେଲେ । ଦୀର୍ଘଦିନ ପରେ ଆରୋଗ୍ୟ ହେଲେ ସତ; କିନ୍ତୁ ଚକ୍ଷୁଦ୍ୱୟ ଏବଂ ବାମଗୋଡ଼ ପୂରାପୂରି ନଷ୍ଟ ହୋଇଗଲା । ସେ ବର୍ତ୍ତମାନ କଲିକତା ନଗରୀର ଫୁଟପାଥ୍‌ରେ ଜଣେ ଅନ୍ଧ ଭିକ୍ଷୁ ।

ଦିନ, ମାସ, ବର୍ଷ ଏହିପରି ବହୁଦିନ ବିତିଗଲା, ତଥାପି ପୁଅ ଘରକୁ ଫେରିଲାନି । ବୃଦ୍ଧ ରାମ ବେହେରା ଛିଅ ଖଣ୍ଡିକ ବନ୍ଧା ପକାଇ କିଛି ଟଙ୍କା ଧରି ପୁଅକୁ ଖୋଜିବା ପାଇଁ ବାହାରିଲା । ହାଓ୍ୟାଡ଼ା-ଷ୍ଟେସନରେ ଓହ୍ଲାଇ ଅଳ୍ପ ଦୂର ଯାଇନି ଜଣେ ଅନ୍ଧ ଭିକ୍ଷୁ ଫୁଟ୍-ପାଥର ଗୋଟିଏ କୋଣରୁ ଆକୁଳ ସ୍ୱରରେ ଡାକିଲା, "ବାବୁ ଗରିବକୁ ପଇସାଟିଏ ଦିଅନ୍ତୁ !" ରାମ ବେହେରା ଦୃଷ୍ଟି ଫେରାଇ ଚାହିଁଲା, ଭଲ କରି ଚାହିଁଲା, ଜୋ'କରି ରଡ଼ି ଛାଡ଼ି ସେହି ଅନ୍ଧ ଭିକ୍ଷୁଟିକୁ କୁଣ୍ଢାଇ ପକାଇ ଖନ୍ ଖନ୍ ହୋଇ ଡାକିଲା, ସୁବ୍ରି !...

ଏହି ମୁହୂର୍ତ୍ତଟି ପିତା ଓ ପୁତ୍ର ଉଭୟଙ୍କର ଜୀବନରେ ଅବିସ୍ମରଣୀୟ । ଏହି ମୁହୂର୍ତ୍ତର ଅବିସ୍ମରଣୀୟ ଅନୁଭୂତିରୁ ହିଁ କ୍ଷୁଦ୍ର-ଗଳ୍ପର ସୃଷ୍ଟି । ଏହା ଜୀବନର ଗୋଟିଏ ମୁହୂର୍ତ୍ତର ଘଟଣା ଯାହାକି ଜୀବନରେ କେବେ ଭୁଲି ହେବ ନାହିଁ । ଏହି ମୁହୂର୍ତ୍ତର ଘଟଣା ଉପରେ ହିଁ କ୍ଷୁଦ୍ର ଗଳ୍ପର ଯୋଜନା ହୋଇଥାଏ ।

ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପର ଇତିହାସ ଖୁବ୍ ଅଳ୍ପଦିନର । ଫକୀରମୋହନଙ୍କ ସମୟରୁ କ୍ଷୁଦ୍ରଗଳ୍ପ ରଚନା ଆରମ୍ଭ ହୁଏ । ରାଧାନାଥଙ୍କ "ଇଟାଳୀୟ ଯୁବା" ଆଦି ଗଳ୍ପକୁ କେତେକ କ୍ଷୁଦ୍ରଗଳ୍ପ ବୋଲି କହୁଥିଲେ ମଧ୍ୟ ତାହା ବାସ୍ତବିକ କ୍ଷୁଦ୍ରଗଳ୍ପ ପଦବାଚ୍ୟ ନୁହେଁ । ଯୋଗଜନ୍ମା ଫକୀରମୋହନଙ୍କ ଅମର ଲେଖନୀ ଓଡ଼ିଆ ଗଳ୍ପ ଓ ଉପନ୍ୟାସ ସାହିତ୍ୟର ମୂଳ ଭିତ୍ତି ସ୍ଥାପନ କରି ତାହାକୁ ସମୃଦ୍ଧ କରିଥିଲା । ହାସ୍ୟରସ ଜରିଆରେ ସମାଜର ଆବର୍ଜନା ଓ କୁସଂସ୍କାରଗୁଡ଼ିକୁ ପାଠକ ସମ୍ମୁଖରେ ଉପସ୍ଥାପିତ କରିବାପାଇଁ ସେ ଚାହିଁଥିଲେ ଓ ସେଥିରେ ଯଥେଷ୍ଟ ସଫଳତା ଲାଭ କରିଥିଲେ । ଖାଣ୍ଟି ଗାଉଁଲି ଭାଷା ଯେଉଁ ଭାଷା କି ସବୁ ଶ୍ରେଣୀର ପାଠକମାନଙ୍କୁ

ଜୁଏଁ ସେହି ଭାଷା ତାଙ୍କ ଗଳ୍ପ ଓ ଉପନ୍ୟାସର ଭାଷା ଅଟେ । ଓଡ଼ିଆ ଗଦ୍ୟ ସାହିତ୍ୟରେ ତାଙ୍କ ସ୍ଥାନ ଯେ ସର୍ବାଗ୍ରେ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଫକୀରମୋହନଙ୍କ ପରେ କିଛି ଦିନ ଧରି ଆଉ କ୍ଷୁଦ୍ରଗଳ୍ପ ରଚନା କରାଯାଇ ନାହିଁ । ଏହି ସମୟକାଳ ୨୦ ବର୍ଷରୁ କମ୍ ନୁହେଁ । ଏହି ସମୟରେ କେବଳ ମଝିରେ ମଝିରେ ଗୋପାଳ ପ୍ରହରାଜଙ୍କର କେତୋଟି କାହାଣୀ ଉତ୍କଳ ସାହିତ୍ୟରେ ପ୍ରକାଶ ପାଉଥିଲା । ଏହି ସମୟକୁ ଗଳ୍ପ ସାହିତ୍ୟର ଅନ୍ଧକାର ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୁନଶ୍ଚ ସତ୍ୟବାଦୀ ଯୁଗ ଆରମ୍ଭରେ ଗଳ୍ପ ସାହିତ୍ୟର ବିକାଶ ପାଇଁ ଦୃଷ୍ଟି ଦିଆଯାଏ । ସତ୍ୟବାଦୀର ବକୁଳ କୁଞ୍ଜବନ ତଳେ ସାଧନାରତ ଗୋଦାବରୀଶଙ୍କ ଅମର କଲମରୁ ବହୁ ସାର୍ଥକ କ୍ଷୁଦ୍ରଗଳ୍ପର ସୃଷ୍ଟି ହୁଏ । ସାଧାରଣ ଲୋକଙ୍କ ଦୁଃଖ ଦୈନ୍ୟ ଚିତ୍ରଣ କରିବାରେ ତାଙ୍କର ଲେଖନୀ ପଟୁ ଥିଲା । ଫକୀରମୋହନଙ୍କ ଗଳ୍ପ ଉପନ୍ୟାସ ହାସ୍ୟରସଭରା ହେବାବେଳେ ଗୋଦାବରୀଶଙ୍କ ଗଳ୍ପ ଉପନ୍ୟାସ ଅଶ୍ରୁସିକ୍ତ ଅଟେ ।

ଗଳ୍ପ ସାହିତ୍ୟକୁ ସବୁଜ ଯୁଗର ଅବଦାନ କମ୍ ନୁହେଁ । ସବୁଜଯୁଗ ଲେଖକମାନଙ୍କ ମଧ୍ୟରେ କାଳନ୍ଦୀ ବାବୁ କ୍ଷୁଦ୍ରଗଳ୍ପ ରଚନା କରିବାରେ ଯଥେଷ୍ଟ ପାରଦର୍ଶିତା ଅର୍ଜନ କରିଛନ୍ତି ଓ ତାଙ୍କର ସୃଷ୍ଟି ସାର୍ଥକ ହୋଇଛି । ଏହାପରେ ସମାଜରେ କ୍ଷୁଦ୍ର ଗଳ୍ପର ଆଦର ଦିନକୁ ଦିନ ବଢ଼ିବାକୁ ଲାଗେ ଏବଂ ବହୁ ପ୍ରତିଭା-ବାନ୍ ଲେଖକ କ୍ଷୁଦ୍ରଗଳ୍ପ ରଚନାରେ ହାତ ଦିଅନ୍ତି । ଏମାନଙ୍କ ମଧ୍ୟରୁ ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ଗୋପୀନାଥ ମହାନ୍ତି, ପଦ୍ମଶ୍ରୀ ସଚ୍ଚି ରାଉତରାୟ, ଅଧ୍ୟାପକ ରାଜକିଶୋର ରାୟ,

ରାଜକିଶୋର ପଟ୍ଟନାୟକ ଓ ସୁରେନ୍ଦ୍ର ମହାନ୍ତି ଆଦି ପ୍ରଧାନ । ସଚ୍ଚି ରାଉତରାୟଙ୍କ "ମଶାଣିର ଫୁଲ", ଗୋଦାବରୀଶ ମହାପାତ୍ରଙ୍କ "ମାଗୁଣିର ଶଗଡ଼," ରାଜ କିଶୋର ରାୟଙ୍କର "କଳଙ୍କ ଶିଳ୍ପୀ" ନିତ୍ୟାନନ୍ଦ ବାବୁଙ୍କର "ଅନ୍ୱେଷଣ" ଓ ସୁରେନ୍ଦ୍ର ମହାନ୍ତିଙ୍କର "ରୁଟି ଓ ଚନ୍ଦ୍ର" ଆଦି ଗଳ୍ପଗୁଡ଼ିକ ଓଡ଼ିଆ ଗଳ୍ପ ସାହିତ୍ୟର ଅନବଦ୍ୟ ସୃଷ୍ଟି । ଗୋଦାବରୀଶ ବାବୁଙ୍କର ଗଳ୍ପରେ ତୀବ୍ର ଜାତୀୟତା ଦେଖାଯାଏ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବା ଦିଗରେ ରାଜକିଶୋର ପଟ୍ଟନାୟକଙ୍କର ଅସାଧାରଣ କୃତିତ୍ୱ ରହିଛି । ରାଜ୍ ରାୟଙ୍କର ଶବ୍ଦବିଭବ ଓ ନାଟକୀୟ ପରିବେଷଣ ଖୁବ୍ ଚିତ୍ତାକର୍ଷକ । ସୁରେନ୍ଦ୍ର ମହାନ୍ତିଙ୍କୁ "ସିନିକ୍" ଲେଖକ କୁହାଯାଇପାରେ ।

ଦ୍ୱିତୀୟ ମହାଯୁଦ୍ଧ ପରେ ଓ ବିଶେଷତଃ ଭାରତ ସ୍ୱାଧୀନତା ଲାଭ କରିବା ପରେ ବହୁ ନୂତନ ନୂତନ ସମସ୍ୟା ଦେଖାଦିଏ ଓ ଲେଖକର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସେ । ବହୁ ନୂତନ ପତ୍ରପତ୍ରିକା ପ୍ରକାଶ ପାଇବା ଫଳରେ ବହୁ ତରୁଣ ଲେଖକ ପ୍ରତିଷ୍ଠାଲାଭ କରିବାର ସୁଯୋଗ ପା'ନ୍ତି ।

ସେମାନଙ୍କ ମଧ୍ୟରୁ ମହାପାତ୍ର ନୀଳମଣି ସାହୁ, ଫତୁରାନନ୍ଦ, ହେମକାନ୍ତ ମିଶ୍ର, ଅଖିଳ କୁମାର ବରାଳ, ଭାଗୀରଥୀ ନେପାକ, ବ୍ରହ୍ମାନନ୍ଦ ପଣ୍ଡା ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ବର୍ତ୍ତମାନ ବହୁ ତରୁଣ ଲେଖକ ଲେଖିକା କ୍ଷୁଦ୍ରଗଳ୍ପ ରଚନାରେ ହାତ ଦେଇଥିବା ଆଶା ଓ ଆଶ୍ୱାସନାର ବିଷୟ ଅଟେ । ଏସବୁ ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପର ଭବିଷ୍ୟତ ଉଜ୍ଜ୍ୱଳ, ଏଥିରେ ସନ୍ଦେହର ଅବକାଶ ନାହିଁ ।

# ନୂତନ ଭାରତ ଓ ନେହେରୁ

ସ୍ୱାଧୀନତା ପ୍ରାପ୍ତି ପରେ ପଣ୍ଡିତ ଜବାହରଲାଲଙ୍କ ନେତୃତ୍ୱରେ ଭାରତରେ ଯେଉଁ ନୂତନ ବୈପ୍ଳବିକ ଯୁଗର ସୂତ୍ରପାତ ହେଲା ତାହାର ବିଶେଷତ୍ୱ ହେଉଛି ଗଣତାନ୍ତ୍ରିକ ସମାଜବାଦର ପରୀକ୍ଷା ଯାହାର ଫଳାଫଳ ଉପରେ ଭାରତର ୪୦ କୋଟି ଜନତାର ଭାଗ୍ୟ ନିର୍ଭର କରିବା ସଙ୍ଗେ ସଙ୍ଗେ ସମଗ୍ର ଏସିଆ ତଥା ପୃଥିବୀର ରାଜନୈତିକ ତଥା ଅର୍ଥନୈତିକ ରୂପରେଖ ବହୁ ପରିମାଣରେ ନିର୍ଭର କରିବାର ସମ୍ଭାବନା ଥିଲା ।

ଭାରତରେ ଉଭୟ ଗଣତନ୍ତ୍ର ଓ ସମାଜବାଦ ନୂତନ । ପୁନଶ୍ଚ ଏହି ଦୁଇଟିର ଏକ ସଙ୍ଗେ ପରୀକ୍ଷା ଆହୁରି ଅଦ୍ଭୁତ । ଗଣତନ୍ତ୍ର ଦେଶରେ ପ୍ରକୃତ ରାଜନୈତିକ ସ୍ୱାଦୁ ଯେପରି ଉପଭୋଗ କରାଯାଇ ପାରେ, ସମାଜବାଦୀ ରାଷ୍ଟ୍ରରେ ପ୍ରକୃତ ଅର୍ଥନୈତିକ ସ୍ୱାଧୀନତା ମିଳି ଜୀବନ ଉପଭୋଗ୍ୟ ହୋଇଥାଏ । ଏହି ଦୁଇଟିର ମିଳନ ହିଁ ବିଶ୍ୱକୁ ସ୍ୱର୍ଗରେ ପରିଣତ କରିଏ । ମହାନ୍ କଳ୍ପନାବିଳାସୀ ପଣ୍ଡିତ ନେହେରୁ ତାଙ୍କର ଏହି ପ୍ରିୟ ଜନ୍ମମାଟି ଭାରତକୁ ଆଧୁନିକ ସ୍ୱର୍ଗରେ ପରିଣତ କରିବା ପାଇଁ ଚଳାଇଲେ ଗଣତନ୍ତ୍ର ଓ ସମାଜବାଦର ଅଦ୍ଭୁତ ପରୀକ୍ଷା । ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ, କାଶ୍ମୀରଠାରୁ ନେଫା ପର୍ଯ୍ୟନ୍ତ ବିସ୍ତୃତ ଏହି ବିରାଟ ଲାବରେଟରୀ ମଧ୍ୟରେ ଏହି ଦୁଃସାହସୀ ବୈଜ୍ଞାନିକ ୧୭ ବର୍ଷ ଧରି ଅବିଶ୍ରାମ ଗତିରେ ନାନା ଘାତ ପ୍ରତିଘାତ ମଧ୍ୟରେ ଧୈର୍ଯ୍ୟଚ୍ୟୁତ ନ ହୋଇ ଜୀବନର ଶେଷ

ନିଃଶ୍ୱାସ ନେବା ପର୍ଯ୍ୟନ୍ତ ଯେପରି ଗଣତନ୍ତ୍ର ଓ ସମାଜବାଦର ପରୀକ୍ଷା ଚଳାଇ ଆସିଲେ ବିଶ୍ୱ ଇତିହାସରେ ତା'ର ପଟାନ୍ତର ନାହିଁ । କଠୋର ବାସ୍ତବତାକୁ ଉପଲବ୍ଧି ନ କରି ଏପରି ଦୁଃସାହସ କରିବା ତାଙ୍କର ଭୁଲ ହୋଇପାରେ, ଆମ୍ଭେମାନେ ଦୀର୍ଘ ଦିନ ଅପେକ୍ଷା କରିବା ପରେ ମଧ୍ୟ ଗଣତନ୍ତ୍ର ବା ସମାଜବାଦ କାହାରି ସ୍ୱାଦ ଉପଭୋଗ କରି ନ ପାରିବାରୁ ବ୍ୟଥିତ ହୋଇପାରୁ, କିନ୍ତୁ ଦେଶଗଠନ ପାଇଁ ସେହି ମହାନ୍ କର୍ମଯୋଗୀଙ୍କ ନିରବଚ୍ଛିନ୍ନ କର୍ମ ଅଭୂତପୂର୍ବ ।

ସମଗ୍ର ଏସିଆ ମହାଦେଶର ଯେତେବେଳେ ଗୋଟିଏ ପରେ ଗୋଟିଏ ଦେଶ ସାମରିକ ଶାସନର କବଳରେ ପଡ଼ି ଗଣତନ୍ତ୍ରକୁ କବର ଦେଉଥିଲା, ସେତିକବେଳେ ଯେଉଁ ଅପୂର୍ବ ସାହସରେ ସେ ଏହି ବିରାଟ ମହାଦେଶରେ ଗଣତନ୍ତ୍ରର ପରୀକ୍ଷା ଚଳାଇ ଆସିଲେ, ତାହା ବିଶ୍ୱ ରାଜନୀତିଜ୍ଞମାନଙ୍କୁ, ଯେଉଁମାନେ ବ୍ରିଟିଶ ସରକାର ଚାଲି ଯିବାପରେ ଭାରତରେ ଅରାଜକତା ସୃଷ୍ଟି ହୋଇ-ଯାଇପାରେ ବୋଲି ଆଶଙ୍କା ପୋଷଣ କରିଥିଲେ, ସେମାନଙ୍କୁ ତଟସ୍ଥ କରି ଦେଲା ଏବଂ ସମଗ୍ର ଏସିଆ ମହାଦେଶରେ ଭାରତ ଏକମାତ୍ର ଗଣତନ୍ତ୍ରର ଆଶା ଭରସାର ସ୍ଥଳ ହୋଇ ରହିଲା ।

କିନ୍ତୁ ଦେଶରେ ଅର୍ଥନୈତିକ ବୈଷମ୍ୟ ସୃଷ୍ଟି ହୋଇ କେବଳ ମୁଷ୍ଟିମେୟ ବ୍ୟକ୍ତିଙ୍କ ହସ୍ତରେ ପୁଞ୍ଜି ଠୁଳ ହୋଇ ରହିଲେ ଏବଂ ଅପର ପକ୍ଷରେ ସଂଖ୍ୟାଧିକ ବ୍ୟକ୍ତି ଦରିଦ୍ରତାର କଷାଘାତରେ ନିଷ୍ପେଷିତ ହେଲେ ସେପରି ଗଣତନ୍ତ୍ର ଶାସନ ମୂଲ୍ୟହୀନ ବୋଲି ସେ ଅନୁଭବ କରୁଥିଲେ । ତେଣୁ ସେ ସମାଜବାଦ ପ୍ରତି ଆକୃଷ୍ଟ ହୋଇ ତା'ର ନିରବଚ୍ଛିନ୍ନ ପରୀକ୍ଷା ଚଳାଇବାକୁ ଦୃଢ଼ପରିକର ହୋଇଥିଲେ ।

ରୁଷ୍ ଓ ଲାଲଚୀନ୍ ଆଦି କମ୍ୟୁନିଷ୍ଟ ରାଜ୍ୟ ପରିଭ୍ରମଣ କରି ଫେରିବା ପରେ ସେ ସମାଜବାଦ ପ୍ରତି ଅଧିକରୁ ଅଧିକତର ଆକୃଷ୍ଟ ହୋଇ ପଡ଼ିଲେ ହେଁ ଜୋର ଜବରଦସ୍ତ ସଙ୍ଗୀନ ମୁନ ଚଳାଇ ସମାଜବାଦ ପ୍ରତିଷ୍ଠା କରିବା ସପକ୍ଷରେ ନ ଥିଲେ ।

ସେ ସମାଜବାଦର ଯେତିକି ପ୍ରିୟ ଗଣତନ୍ତ୍ରର ବି ସେତିକି ପ୍ରିୟ ଥିଲେ । ସମାଜବାଦ ନାମରେ ଗଣତନ୍ତ୍ରକୁ ବଳି ଦେବା ପାଇଁ ଅଥବା ଗଣତନ୍ତ୍ର ନାମରେ ସମାଜବାଦକୁ ହତ୍ୟା କରିବାପାଇଁ ସେ ରାଜି ନ ଥିଲେ ।

"ଆରାମ୍ ହାରାମ୍ ହୈ" ବୋଲି ଘୋଷଣା କରି ଦେଶବାସୀଙ୍କୁ କଷ୍ଟସହିଷ୍ଣୁ ଏବଂ ପରିଶ୍ରମୀ ହେବାକୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ସେହି ପରିଶ୍ରମର ଫଳକୁ ଗଣତାନ୍ତ୍ରିକ ଉପାୟରେ ସମବଣ୍ଟନ କରିବା ପାଇଁ ସମାଜବାଦ ରାଷ୍ଟ୍ର ଗଠନର ପ୍ରୟାସ କରିଥିଲେ ।

କିନ୍ତୁ କଂଗ୍ରେସଦଳରେ ବିଭିନ୍ନ ମତବାଦୀ ଲୋକ ଏପରି କି ପରସ୍ପରବିରୋଧୀ ଯଥା ସମାଜବାଦୀ ଓ ଅଣସମାଜବାଦୀ, ଏକ-ଛତ୍ରବାଦୀ ଓ ଗଣତାନ୍ତ୍ରିକ ଲୋକ ରୁଣ୍ଡ ହୋଇଥିବା ଫଳରେ କୌଣସି ଏକ ନିର୍ଦ୍ଦିଷ୍ଟ ନୀତିକୁ ସଫଳ ଭାବରେ ରୂପାୟନ କରିବା ସମ୍ଭବ ହୋଇ ପାରି ନ ଥିଲା । ସ୍ୱାଧୀନତା ସଂଗ୍ରାମ ବେଳେ କଂଗ୍ରେସ ଅନୁଷ୍ଠାନ ମଧ୍ୟକୁ ବିଭିନ୍ନ ମତବାଦୀ ଲୋକ ପ୍ରବେଶ କରିଯାଇଥିଲେ; କାରଣ ସେତେବେଳେ ପବିତ୍ର ଭାରତଭୂମିରୁ ବିଦେଶୀ ସରକାରକୁ ବିତାଡ଼ିତ କରିବା କଂଗ୍ରେସର ମୁଖ୍ୟ ଲକ୍ଷ୍ୟ ଥିଲା ଏବଂ ଏହି ଲକ୍ଷ୍ୟ ପୂରଣ ପାଇଁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ଦେଶର ସକଳ ଶ୍ରେଣୀର ଲୋକଙ୍କୁ ଆହ୍ୱାନ କରାଯାଇଥିଲା ।

ତେଣୁ କଂଗ୍ରେସ ଏକ ରାଜନୈତିକ ଦଳ ପରି କୌଣସି ଏକ ନିର୍ଦ୍ଦିଷ୍ଟ ନୀତି ଉପରେ ବିଶ୍ୱାସ କରୁଥିବା ସଂଗଠିତ କେତେକ ଲୋକଙ୍କ ପ୍ରତିନିଧିତ୍ୱ ନ କରି ଭାରତର ସବୁ ଶ୍ରେଣୀ, ସବୁ ଧର୍ମାବଲମ୍ବୀ ଓ ସବୁ ମତବାଦୀଙ୍କର ପ୍ରତିନିଧିତ୍ୱ କରି ପାରିଥିଲା ।

କିନ୍ତୁ ଦେଶ ସ୍ୱାଧୀନ ହେବାପରେ କଂଗ୍ରେସ ଯେତେବେଳେ ଦେଶ ଶାସନ କରିବାକୁ ଲାଗିଲା, ଏହା ଏକ ସୀମିତ ରାଜନୈତିକ ଦଳ ରୂପେ ପରିଣତ ହେଲା, କିନ୍ତୁ ପୂର୍ବପରି ବହୁ ବିଭିନ୍ନ ମତବାଦୀ ଲୋକ ଏହା ମଧ୍ୟରେ ରହିଗଲେ ଏବଂ ବହୁ ସମୟରେ ସେମାନେ ସରକାର ଉପରେ ନିଜ ନିଜ ମତବାଦ ଅନୁସାରେ ପ୍ରଭାବ ପକାଇବାର ଅପଚେଷ୍ଟା ଚଳାଇଲେ । କୃଷ୍ଣ ମେନନ୍ ଏବଂ ବିରଳା ଉଭୟ ଯେଉଁ କଂଗ୍ରେସରେ କାମ କରିବା ସମ୍ଭବ, ସେଠାରେ ଗୋଟିଏ ନିର୍ଦ୍ଦିଷ୍ଟ ନୀତି କାର୍ଯ୍ୟକାରୀ କରିବା କଂଗ୍ରେସ ପକ୍ଷରେ ସମ୍ଭବ କିପରି ହୋଇପାରିବ ?

ନେହରୁଙ୍କ ପ୍ରବଳ ପ୍ରଭାବ ଓ ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଏହି ପରସ୍ପରବିରୋଧୀ ମତବାଦୀ କଂଗ୍ରେସ ସଭ୍ୟମାନେ ମୁଣ୍ଡ ନୁଆଁଇ ଥିଲେ ମଧ୍ୟ ପରୋକ୍ଷରେ ନେହେରୁଙ୍କ ନୀତିକୁ କାର୍ଯ୍ୟକାରୀ କରାଇ ଦେଉ ନ ଥିଲେ । ଏପରି କି ନେହେରୁ ସମାଜବାଦ ଆଡ଼କୁ ଚାଲିବାରୁ କଂଗ୍ରେସର ସମାଜବାଦ ବିରୋଧୀ ନେତାମାନେ ତାଙ୍କୁ ସିଧା ସଳଖ କିଛି କହି ନ ପାରିଥିଲେ ମଧ୍ୟ ତାଙ୍କ ସମାଜବାଦୀ ସହକର୍ମୀମାନଙ୍କୁ କ୍ଷମତାଚ୍ୟୁତ କରିବା ପାଇଁ ଷଡ଼ଯନ୍ତ୍ର କରିବାକୁ ଭୁଲି ନ ଥିଲେ ଏବଂ ଏହା ଫଳରେ ଶ୍ରୀ କୃଷ୍ଣମେନନ ଓ ମାଳବ୍ୟ ଆଦିଙ୍କୁ ମନ୍ତ୍ରିମଣ୍ଡଳରୁ ବିଦାୟ ନେବାକୁ ପଡ଼ିଥିଲା । ନେହେରୁଙ୍କ କୋଠଗୃହ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ କଂଗ୍ରେସ କର୍ମୀମାନେ ଯତ୍ନବାନ୍ ହୋଇ ନ ଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଖଦଡ଼ ପିନ୍ଧିବା

ପରି ନେହେରୁଙ୍କ ଆହ୍ୱାନରେ ସମାଜବାଦ ଖୋଳ ମଡ଼ାଇ କଂଗ୍ରେସୀ ନେତାମାନେ ନେହେରୁଙ୍କ ପରିକଳ୍ପନାକୁ ଭଣ୍ଡୁର କରାଇବା ସଙ୍ଗେ ସଙ୍ଗେ ନିଜ ନିଜକୁ ବିଶାଳ ସମ୍ପଦର ଅଧିକାରୀ କରି ପାରିଲେ ।

ଏଣୁ ସମାଜବାଦର ପ୍ରକୃତ ସ୍ୱାଦୁ ଉପଲବ୍ଧ ହୋଇ ନ ପାରି ଏହା ଏକ ଶସ୍ତା ସ୍ଲୋଗାନରେ ପରିଣତ ହୋଇଗଲା । ଏଣେ ଅନ୍ୟାୟ ଭାବରେ ଧନ ଅର୍ଜନ କରି ଠୁଳ କରି ରଖିଥିବା ଶିଳ୍ପପତି, ବ୍ୟବସାୟୀ, କଣ୍ଟ୍ରାକ୍ଟର ଓ ଖଣିମାଲିକ ଆଦି କଂଗ୍ରେସ ଭିତରେ ପଶି ଧନବଳରେ ଲୋକମତକୁ କ୍ରୟ କରିବା ପାଇଁ ଅପଚେଷ୍ଟା ଚଳାଇବାରୁ ଏବଂ ସେମାନେ ଏହି ଅପଚେଷ୍ଟା ମାଧ୍ୟମରେ କ୍ଷମତା ଲାଭ କରିବା ଫଳରେ ଗଣତନ୍ତ୍ର ଏକ ପ୍ରହସନରେ ପରିଣତ ହୋଇ ପଡ଼ିଲା ।

ତଥାପି କଂଗ୍ରେସ ଏତେଦିନ ଧରି କ୍ଷମତାରେ ରହି ପାରିଛି, କାରଣ ତାହାର ସୌଭାଗ୍ୟ ଯେ ଗାନ୍ଧିଜୀଙ୍କ ପରେ ନେହେରୁଙ୍କ ପରି ବିରାଟ ନେତାଙ୍କ ବଳିଷ୍ଠ ନେତୃତ୍ୱ ଦୀର୍ଘ ଦିନଧରି ପାଇ ପାରିଥିଲା; କିନ୍ତୁ ନେହେରୁଙ୍କ ଗଣତନ୍ତ୍ର ଓ ସମାଜବାଦର ପରୀକ୍ଷା ସଫଳୀକୃତ ହୋଇ ପାରିଲା ନାହିଁ, କାରଣ ତାଙ୍କର ଦୁର୍ଭାଗ୍ୟ ଯେ ତାଙ୍କୁ ସ୍ୱାଧୀନତା ପରେ ବହୁ ବିରୁଦ୍ଧ ମତବାଦୀ ଲୋକଙ୍କ ଅଦ୍ଭୁତ ମିଳନ ହୋଇଥିବା ଖେଚଡ଼ି କଂଗ୍ରେସର ନେତୃତ୍ୱ ନେବାକୁ ପଡ଼ିଥିଲା ।

# ସିଂହାବଲୋକନ

ହିଟଲର ଭାବୁଥିଲେ— ଭାରତୀୟମାନଙ୍କଠାରେ କିଛି ମୌଳିକ ତ୍ରୁଟି ନ ଥିଲେ ୪୦ କୋଟି ଲୋକ ବିଶିଷ୍ଟ ଏହି ଉପମହାଦେଶକୁ ସାତ ସମୁଦ୍ରପାରି ଏକ କ୍ଷୁଦ୍ର ଦ୍ୱୀପ ଶତ ଶତ ବର୍ଷ ଧରି ଶାସନ କରିବା ସମ୍ଭବ ହୋଇପାରି ନ ଥାନ୍ତା । ଆଉ କେତେକଙ୍କ ମତରେ ଇଂରେଜ ଜାତିଠାରେ କିଛି ବିଶେଷ ଗୁଣ ନ ଥିଲେ, ସେମାନେ ବିଶ୍ୱର ଅର୍ଦ୍ଧାଧିକ ଅଞ୍ଚଳକୁ ଶାସନ କରିବାକୁ ସକ୍ଷମ ହୋଇ ନ ଥାନ୍ତେ ।

ଏହି ଉଭୟ ମତରେ ବହୁ ସତ୍ୟତା ଥିବାଭଳି ଜଣାପଡ଼େ । ଭାରତୀୟମାନଙ୍କ ଠାରେ ଏକ ମୌଳିକ ତ୍ରୁଟି ଥିଲା—ତାହା ହେଉଛି ଏକତାର ଅଭାବ ଓ ବ୍ରିଟିଶ ଜାତିଠାରେ ଯେଉଁ ବିଶେଷ ଗୁଣ ଥିଲା ତାହା ହେଉଛି ବିଭକ୍ତ କରି ଶାସନ କରିବା ନୀତି (The Policy of Divide and Rule) । ଭାରତୀୟମାନଙ୍କଠାରେ ଏକତାର ଅଭାବ ଥିବାରୁ ବ୍ରିଟିଶ ଜାତି ସେମାନଙ୍କୁ ବିଭକ୍ତ କରି ଶାସନ କରିବା ପାଇଁ ଅପୂର୍ବ ସୁଯୋଗ ପାଇଥିଲା । ତେଣୁ ଏହି ବିରାଟ ଉପମହାଦେଶକୁ ଇଂଲଣ୍ଡର ମୁଷ୍ଟିମେୟ ସାହେବ ଶାସନ କରିବାକୁ ସକ୍ଷମ ହୋଇଥିଲେ ।

**ଭାରତର ଗୌରବମୟ ଅତୀତ**—ବୁଦ୍ଧି, ବଳ, ଜ୍ଞାନ କେଉଁଥିରେ ଇଂରେଜମାନେ ଭାରତୀୟମାନଙ୍କଠାରୁ ଉତ୍କୃଷ୍ଟ ଥିଲେ,

ତାହା କହାଯାଇ ନ ପାରେ । ଏ ଦେଶର ଆର୍ଯ୍ୟଋଷିମାନେ ବିଶ୍ୱବାସୀଙ୍କୁ ଅମୃତସ୍ୟ ପୁତ୍ର ରୂପେ ସମ୍ବୋଧନ କରି ସମସ୍ତଙ୍କର ମଙ୍ଗଳ ପାଇଁ 'ସର୍ବେ ଭବନ୍ତୁ ସୁଖୀନଃ, ସର୍ବେ ସନ୍ତୁ ନିରାମୟାଃ' ଗାନ କରିଥିଲେ । ଏ ଦେଶର ଧର୍ମଶାସ୍ତ୍ର, ବେଦ, ଉପନିଷଦ, ସଂହିତା ଓ ଗୀତାଦିରେ ଯେଉଁପରି ଗୂଢ଼ ଦର୍ଶନତତ୍ତ୍ୱର ବ୍ୟାଖ୍ୟାନ କରାଯାଇଛି, ତାହା ବିଶ୍ୱରେ ବିରଳ । ଏ ଦେଶର କବି ବେଦ-ବ୍ୟାସ, କାଳିଦାସ, ମାଘ, ଭବଭୂତି, ତୁଳସୀଦାସ ଓ ରବୀନ୍ଦ୍ରନାଥଙ୍କ ସୃଷ୍ଟି ଅନବଦ୍ୟ । ଏ ଦେଶର ଶିଳ୍ପୀ ଅଜନ୍ତା, ଏଲୋରା, ତାଜମହଲ ଓ ପୁରୀ, କୋଣାର୍କ, ଭୁବନେଶ୍ୱରରେ ଶିଳ୍ପର ଯେଉଁ ଅପୂର୍ବ ଆଲେଖ୍ୟ ଆଙ୍କିଛନ୍ତି ତାହା ବିଶ୍ୱରେ ବିସ୍ମୟ ସୃଷ୍ଟି କରିଛି । ଏ ଦେଶର ମହାପୁରୁଷ ବୁଦ୍ଧଦେବ ବିଶ୍ୱର ଆଲୋକ; ସମ୍ରାଟ ଅଶୋକଙ୍କର ରାଜ୍ୟଶାସନ ପୃଥିବୀର ଆଦର୍ଶ । ନାଳନ୍ଦା ବିଶ୍ୱ-ବିଦ୍ୟାଳୟର ଶିକ୍ଷାଦାନ, ଉଜ୍ଜୟିନୀର ସାହିତ୍ୟଚର୍ଚ୍ଚା ଓ ମୋଗଲ ଦରବାରର ଆଭିଜାତ୍ୟ ଆଜି ଇତିହାସର ବିଷୟବସ୍ତୁ । ସଂସ୍କାରକ ଶଙ୍କର, ରାମାନୁଜ, କବୀର, ଚୈତନ୍ୟ, ନାନକ ଓ ଗୁରୁଗୋବିନ୍ଦ ସିଂ ବିଶ୍ୱର ଜାଜ୍ୱଲ୍ୟମାନ ରତ୍ନ ସ୍ୱରୂପ । ଏ ଦେଶର ଇତିହାସ ବୀରତ୍ୱକାହାଣୀରେ ପରିପୂର୍ଣ୍ଣ । ଯୁଦ୍ଧଭୂମିରେ ମୃତ୍ୟୁଲାଭ ହେଲେ ସ୍ୱର୍ଗପ୍ରାପ୍ତି ହୁଏ ବୋଲି ଏ ଦେଶବାସୀମାନଙ୍କର ବିଶ୍ୱାସ । ହିନ୍ଦୁବୀର ଦେଶମାତୃକାର ସୁରକ୍ଷା ପାଇଁ ହସି ହସି ପ୍ରାଣବଳି ଦିଏ । ବିଶ୍ୱ-ବିଜୟୀ ସିକନ୍ଦର କ୍ଷୁଦ୍ର ପାହାଡ଼ିଆ ରାଜ୍ୟର ରାଜା ପୁରୁଙ୍କ ବୀରତ୍ୱରେ ଅଭିଭୂତ ହୋଇ ପଡ଼ିଥିଲେ । ମହାବୀର ଚନ୍ଦ୍ରଗୁପ୍ତ, ହର୍ଷ ଓ ଖାରବେଳଙ୍କର ବୀରତ୍ୱ ଇତିହାସର ଗୌରବୋଜ୍ଜ୍ୱଳ ପୃଷ୍ଠା ମଣ୍ଡନ କରିଛି । ରଣଜିତ୍ ସିଂହ, ଟିପୁ ସୁଲତାନ ଓ ସିରାଜ ଉଦ୍ଦୌଲାଙ୍କ ବୀରତ୍ୱ ଦେଖି ବ୍ରିଟିଶ ଜାତି ସ୍ତମ୍ଭୀଭୂତ ହୋଇଯାଇଥିଲେ । ରାଣା

ସଂଘ ଓ ପ୍ରତାପଙ୍କର ବୀରତ୍ୱ ଓ ଜାତୀୟ ପ୍ରୀତି ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ଆଧୁନିକ ଭାରତକୁ ବାପୁଜୀ ଓ ନେହେରୁଙ୍କର ଅବଦାନ ଅତୁଳନୀୟ ।

**ମୌଳିକ ତ୍ରୁଟି**—କିନ୍ତୁ ଏ ସବୁ ସତ୍ତ୍ୱେ ଏହି ମହାନ୍ ଉପମହାଦେଶ ସାତ ସମୁଦ୍ର ପାରି କ୍ଷୁଦ୍ର ଇଂଲଣ୍ଡ ରାଜ୍ୟର ମୁଷ୍ଟିମେୟ ସାହେବଙ୍କ ଦ୍ୱାରା ଶତ ଶତ ବର୍ଷଧରି ଶାସିତ ହୋଇଥିଲା, କାରଣ ଏ ଜାତିଠାରେ ଏକ ବିରାଟ ଗୁଣର ଅଭାବ ଥିଲା । ତାହା ହେଉଛି ଏକତାର ଅଭାବ ।

ଦେଶଦ୍ରୋହୀ ରାଜା ଅମ୍ଭି ପଡ଼ୋଶୀ ରାଜା ପୁରୁଙ୍କୁ ପରାଭବ ଦେବାପାଇଁ ସେ ଦିନ ଆକ୍ରମଣକାରୀ ସିକନ୍ଦରଙ୍କୁ ପାଛୋଟି ଆଣି ଭାରତ ଇତିହାସରେ ଯେଉଁ କାଳିମା ବୋଳି ଦେଇଛନ୍ତି ତାହା ଲିଭିବାର ନୁହେଁ । ଅଯୋଗ୍ୟ ନନ୍ଦରାଜା ପୁରୁଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ନିଜ ରାଜ୍ୟରେ ନିଶ୍ଚିନ୍ତ ରହି ଏ ଜାତି ପ୍ରତି ଯେଉଁ ଚରମ ବିଶ୍ୱାସଘାତକତା ପ୍ରଦର୍ଶନ କରିଥିଲେ, ସେଥିପାଇଁ ତାଙ୍କୁ କୌଣସି ଐତିହାସିକ କ୍ଷମା ଦେଇ ନ ପାରନ୍ତି । ଏ ଜାତିର ଗଳାରେ ଛୁରୀ ଦେଇ କାପୁରୁଷ ଜୟଚନ୍ଦ୍ର ଯେଉଁ ଦିନ ମହମ୍ମଦ ଘୋରୀଙ୍କୁ ଆମନ୍ତ୍ରଣ କରି ଆଣିଲେ, ସେ ଦୁର୍ଦ୍ଦିନକୁ ଏ ଜାତି ଭୁଲି ପାରିବ ନାହିଁ ।

ରାଣା ପ୍ରତାପଙ୍କୁ ସେ ଦିନ କୌଣସି ରାଜପୁତ ରାଜା ସାହାଯ୍ୟ କରି ନ ଥିଲେ । ନବାବ ସିରାଜ ଉଦ୍ଦୌଲା ଇଂରେଜ ସୈନ୍ୟବାହିନୀ ସହ ଯୁଦ୍ଧରତ ଥିବାବେଳେ ତାଙ୍କ ସେନାପତି କାପୁରୁଷ ମିରଜାଫର କ୍ଳାଇବଙ୍କ ପକ୍ଷ ଗ୍ରହଣ କରିବା ଫଳରେ ସିରାଜଙ୍କ ପତନ ସଙ୍ଗେ ସଙ୍ଗେ ଏ ଦେଶରେ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପିତ ହୋଇ

ପାରନ୍ତି; ନଚେତ୍ ପଲାସୀ ଯୁଦ୍ଧ ହିଁ ଇଂରେଜମାନଙ୍କୁ ଚିରଦିନପାଇଁ ଭାରତଭୂମିରୁ ବିତାଡ଼ିତ କରିଥାନ୍ତା । ସେହିପରି ଟିପୁ ସୁଲତାନଙ୍କୁ ନିଜାମ ଓ ମରହଟ୍ଟା ଶକ୍ତି ସାହାଯ୍ୟ କରିଥିଲେ ଇଂରେଜମାନଙ୍କର ଏ ଉପମହାଦେଶକୁ ଶାସନ କରିବାର ସ୍ୱପ୍ନ ଚିରଦିନ ପାଇଁ ଲୋପ ପାଇଥାନ୍ତା । ସିପାହୀ ବିଦ୍ରୋହ ସମୟରେ ସାତ୍ତିଆଲା ଓ ନିଜାମ ଆଦି ବହୁ ରାଜଶକ୍ତି ଇଂରେଜ ସରକାରଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ କରିଥିଲେ । ସ୍ୱାଧୀନତା ଆନ୍ଦୋଳନବେଳେ ଯେଉଁ ବିଭେଦ ସୃଷ୍ଟି ହେଲା ତାହାର ପରିଣତ ସ୍ୱରୂପ ଭାରତ ଓ ପାକିସ୍ଥାନର ସୃଷ୍ଟି ।

**ଇଂରେଜଙ୍କ ଚତୁରତା**—ଭାରତୀୟମାନଙ୍କର ଏହି ମୌଳିକ ତ୍ରୁଟିକୁ ଇଂରେଜ ଜାତି ଭଲକରି ଲକ୍ଷ୍ୟ କରିଥିଲେ ଓ ଏହାର ପୂର୍ଣ୍ଣ ସୁଯୋଗ ନେଇଥିଲେ । କେତେକ ଇଂରେଜ ବଣିକ ଇଷ୍ଟଇଣ୍ଡିଆ କମ୍ପାନୀ ଗଢ଼ି ପ୍ରାୟ ୧୬୦୦ ଖ୍ରୀଷ୍ଟାବ୍ଦରୁ ଭାରତକୁ ଆସିଥିଲେ ଏବଂ ବାଣିଜ୍ୟର ପ୍ରସାର ପାଇଁ ସୁବିଧା ସୁଯୋଗ ଖୋଜୁଥିଲେ । ସାର୍ ଟମାସ୍ ରୋ ଏହି ସମୟରେ ମୋଗଲ ଦରବାରକୁ ଆଗମନ କରି ଇଂରେଜମାନଙ୍କ ପାଇଁ କେତେକ ବାଣିଜ୍ୟଗତ ସୁବିଧା ହାସଲ କରିଥିଲେ । ସେହିଦିନୁ ଦେଢ଼ ଶହେ ବର୍ଷରୁ ଊର୍ଦ୍ଧ୍ୱକାଳ ଇଂରେଜ ବଣିକମାନେ ଏ ଦେଶରେ ଅବସ୍ଥାନ କରି ବାଣିଜ୍ୟର କ୍ରମପ୍ରସାର କରିବା ସଙ୍ଗେ ସଙ୍ଗେ ଭାରତର ରାଜନୈତିକ ପରିସ୍ଥିତି ଅନୁଧ୍ୟାନ କରୁଥିଲେ ।

ଭାରତର ଦୁର୍ଭାଗ୍ୟକୁ ସେହି ସମୟରେ ଆଉରଙ୍ଗଜେବଙ୍କ ପରି ଜଣେ ସ୍ୱେଚ୍ଛାଚାରୀ ଧର୍ମାନ୍ଧ ବ୍ୟକ୍ତି ଦିଲ୍ଲୀ ସିଂହାସନ ଆରୋହଣ କଲେ ଏବଂ ତାଙ୍କର କୁଶାସନ ଓ ଅତ୍ୟାଚାରର ଫଳରେ ଦେଶସାରା ପ୍ରବଳ ଅସନ୍ତୋଷ ଦେଖାଗଲା । ମରହଟ୍ଟା, ଶିଖ ଓ ରାଜପୁତ

ବୀରମାନେ ବିଦ୍ରୋହ କରି ଆଓରଙ୍ଗଜେବଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ ଏବଂ ମୋଗଲ ସାମ୍ରାଜ୍ୟ ଭୂଲୁଣ୍ଠିତ ପଡ଼ିବା ଅବଶ୍ୟମ୍ଭାବୀ ହୋଇପଡ଼ିଲା; କିନ୍ତୁ ମୋଗଲ ସାମ୍ରାଜ୍ୟର ପତନ ପରେ ଭାରତକୁ ଏକ ଶାସନାଧୀନରେ ରଖିବାପାଇଁ କୌଣସି ବଳିଷ୍ଠ ଶକ୍ତି ନ ଥିଲା । ଇଂରେଜମାନେ ଭଲକରି ଲକ୍ଷ୍ୟ କରିଥିଲେ ଯେ ଯେଉଁ ତିନିଶକ୍ତି—ମରହଟ୍ଟା, ରାଜପୁତ ଓ ଶିଖମାନେ ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ଅସ୍ତ୍ର ତୋଳିଛନ୍ତି ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ସହଯୋଗ କି ବୁଝାମଣା ନାହିଁ ଓ ଏହି ତିନି ଶକ୍ତିକୁ ଏକତ୍ର କରି ନେତୃତ୍ୱ ଦେବାଭଳି ତୁଙ୍ଗ ବ୍ୟକ୍ତିତ୍ୱ ନାହିଁ । ଶିବାଜୀ ମରହଟ୍ଟାମାନଙ୍କର ଅଦ୍ୱିତୀୟ ନେତା ଥିଲେ ଏବଂ ତାଙ୍କର ଅସାଧାରଣ ବୀରତ୍ୱ ଥିଲା, ଏଥିରେ ଐତିହାସିକମାନଙ୍କର ଦ୍ୱିଧାମତ ନାହିଁ; କିନ୍ତୁ ରାଜପୁତ ଓ ଶିଖମାନେ ତାଙ୍କ ନେତୃତ୍ୱକୁ ସ୍ୱୀକାର କରିବାକୁ ରାଜି ନ ଥିଲେ ଅଥବା ସର୍ବ ଭାରତୀୟ ନେତୃତ୍ୱ ନେବାର ସୁଯୋଗ ଶିବାଜୀଙ୍କୁ ମିଳିବା ପୂର୍ବରୁ ସେ ଇହଲୀଳା ତ୍ୟାଗ କରିଥିଲେ । ଆଓରଙ୍ଗ-ଜେବଙ୍କ ମୃତ୍ୟୁ ପୂର୍ବରୁ ଶିବାଜୀଙ୍କ ମହାପ୍ରୟାଣ ହୋଇଯିବାରୁ ଦେଶ ଏକପ୍ରକାର ନେତୃଶୂନ୍ୟ ହୋଇପଡ଼ିଥିଲା ଓ ମୋଗଲ ସାମ୍ରାଜ୍ୟର ପତନ ପରେ ଆଉ ଏକ ବିକଳ୍ପ ସାମ୍ରାଜ୍ୟର ପ୍ରତିଷ୍ଠା ସ୍ୱପ୍ନସମ ଅସମ୍ଭବ ଜଣାପଡ଼ିଥିଲା । ରାଜପୁତମାନଙ୍କ ମଧ୍ୟରେ ସେତେବେଳେ ସେପରି କେହି ତୁଙ୍ଗ ନେତା ନ ଥିଲେ କି ପରସ୍ପର ମଧ୍ୟରେ କଳି କରି ଶକ୍ତିର ଅପଚୟ କରିବା ଅଭ୍ୟାସ ଛାଡ଼ି ନ ଥିଲେ । ସେହିପରି ଗୁରୁ ଗୋବିନ୍ଦସିଂହ କେବଳ ଶିଖମାନଙ୍କର ନେତା ଥିଲେ ଏବଂ ତାଙ୍କ ପରେ ଶିଖମାନଙ୍କ ମଧ୍ୟରେ ବି ସେତେବେଳେ ଆଉ ଉପଯୁକ୍ତ ନେତୃତ୍ୱର ବିକାଶ ହୋଇ ନ ଥିଲା । ଏହିପରି ମୋଗଲ ସାମ୍ରାଜ୍ୟର ଅବସ୍ଥାନ କାଳରେ ସର୍ବଭାରତୀୟ ନେତୃତ୍ୱ ଗ୍ରହଣ

କରିବାକୁ ପୂର୍ଣ୍ଣ ବ୍ୟକ୍ତିତ୍ୱ କିମ୍ବା ଏକ ସୁସଂଘଟିତ ବିରାଟ ଶକ୍ତି ନ ଥିଲା । ଫଳରେ ଆଉରଙ୍ଗଜେବଙ୍କ ପରେ ଯେତେବେଳେ ମୋଗଲ ସାମ୍ରାଜ୍ୟ ମିଳେଇଗଲା, ଭାରତରେ ଏକ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ମରହଟ୍ଟା, ଶିଖ୍ କି ରାଜପୁତ୍ କାହାରି ପକ୍ଷରେ ସମ୍ଭବ ହେଲାନି କିମ୍ବା ମିଳିତ ନେତୃତ୍ୱର ସୃଷ୍ଟି ହୋଇପାରିଲାନି । ଫଳରେ ଭାରତରେ ଏକାଧିକ ସ୍ୱାଧୀନ ରାଷ୍ଟ୍ର ମୁଣ୍ଡ ଟେକି ଉଠିଲେ ଓ ପରସ୍ପର ମଧ୍ୟରେ କଳହ ଲାଗିରହି ଭାରତରେ ଏହି ବିରାଟ ପରିବର୍ତ୍ତନ ଘଟୁଥିବା ବେଳେ ଇଂରେଜ ବ୍ୟବସାୟୀମାନେ ତାହା ସତର୍କତା ସହିତ ଲକ୍ଷ୍ୟ କରୁଥିଲେ । ଏ ସମସ୍ତ ଘଟଣାରୁ ଭାରତୀୟ ଚରିତ୍ରରେ ଯେଉଁ ଗୁରୁତର ତ୍ରୁଟି ସେମାନେ ଲକ୍ଷ୍ୟ କରିଥିଲେ ତାହା ହେଉଛି ଏକତାର ଅଭାବ । ଗୋଟିଏ ରାଜ୍ୟ ବାହ୍ୟଶତ୍ରୁ ଦ୍ୱାରା ଆକ୍ରମିତ ହେଲେ, ପଡ଼ୋଶୀ ରାଜ୍ୟମାନେ ସମ୍ମିଳିତ ହୋଇ ବାହ୍ୟ ଶତ୍ରୁର ପଥରୁଦ୍ଧ କରିବା ସମ୍ଭବ ନୁହେଁ ଏବଂ ଠିକଏ କୌଶଳ ପ୍ରୟୋଗ କରି ପାରିଲେ ଅନ୍ୟ ଭାରତୀୟ ରାଜ୍ୟମାନଙ୍କଠାରୁ ବାହ୍ୟ ଶତ୍ରୁ ସାହାଯ୍ୟ ପାଇପାରିବା ନିତାନ୍ତ ଅସମ୍ଭବ ନୁହେଁ ବୋଲି ଇଂରେଜମାନଙ୍କର ସ୍ପଷ୍ଟ ଧାରଣା ହୋଇଥିଲା । ମୋଗଲ ସାମ୍ରାଜ୍ୟ ଛିନ୍ନଭିନ୍ନ ହୋଇ ପଡ଼ି ନ ଥିଲେ ଅଥବା ଅନ୍ୟ ଏକ ବିକଳ୍ପ ସାମ୍ରାଜ୍ୟର ପ୍ରତିଷ୍ଠା ହୋଇ ଭାରତକୁ ଏକ ଶାସନାଧୀନ କରି ପାରିଥିଲେ, ଇଂରେଜ ବେପାରୀମାନେ ବେପାରରୁ ରାଜ୍ୟପ୍ରତିଷ୍ଠା କରିବାର ସ୍ୱପ୍ନ ଦେଖି ନଥାନ୍ତେ; କିନ୍ତୁ ଆମର ଦୁର୍ଭାଗ୍ୟକୁ ଭାରତରେ ଅସଂଖ୍ୟ ସ୍ୱାଧୀନ ରାଜ୍ୟ ମୁଣ୍ଡ ଟେକି ଉଠିବାରୁ ଗୋଟିଏ ବିରୁଦ୍ଧରେ ଅନ୍ୟଟିକୁ ଲଗାଇ ଦେଇ ସୁଯୋଗ ମାରିନେବା ଓ ବେଳ ଉଣ୍ଡି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ-ଗୁଡ଼ିକୁ ଆକ୍ରମଣ କରି ଜିଣିବାର ଆଶା ଇଂରେଜ ବେପାରୀମାନଙ୍କ ମନରେ ସଂଚ୍ଚାରିତ ହେଲା ଏବଂ ସେମାନେ ବିଭକ୍ତୀକରଣ ଓ ଶାସନ

(The Policy of Divide and Rule) ନୀତିକୁ ଖୁବ୍ ସତର୍କତା ସହ ପ୍ରୟୋଗ କରିବାରେ ଲାଗିଲେ । ସିରାଜଙ୍କୁ ହଟାଇବା ପାଇଁ ମୀରଜାଫରଙ୍କ ସହ ଗୁପ୍ତ ଷଡ଼ଯନ୍ତ୍ର, ରତନ ଶେଠଙ୍କ ସହ ବନ୍ଧୁତ୍ୱ, ଟିପୁଙ୍କୁ ପରାସ୍ତ କରିବାପାଇଁ ନିଜାମଙ୍କ ସହ ବନ୍ଧୁତା ସ୍ଥାପନ, ମରହଟ୍ଟାମାନଙ୍କ ମଧ୍ୟରେ ଭେଦ ସୃଷ୍ଟି, ଇତ୍ୟାଦି ନାନା ଦୁଷ୍କର୍ମର ଆଶ୍ରୟ ନେଇ ଇଂରେଜ ବେପାରୀମାନେ ନିଜର ଘରର ମଠାଳକୁ ଭର୍ତ୍ତି କଲେ ।

**ହିନ୍ଦୁ ମୁସଲମାନ ସଂପର୍କ**—ଆଉ ଗୋଟିଏ ବିଶେଷ ଦିଗ ପ୍ରତି ଇଂରେଜ ବଣିକମାନେ ଦୃଷ୍ଟି ଦେଇଥିଲେ – ତାହା ହେଉଛି ଭାରତରେ ହିନ୍ଦୁ ମୁସଲମାନଙ୍କ ସମ୍ପର୍କ । ବାଦଶାହ ଆକବରଙ୍କ ସମୟରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଯେଉଁ ଗଙ୍ଗା ଯମୁନାର ମିଳନ ହୋଇ ସାହାଜାହାନଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ଦେଶରେ ଶାନ୍ତି ମୈତ୍ରୀର ଫଲ୍‌ଗୁ ଛୁଟିଥିଲା, ତାହା ଧର୍ମାନ୍ଧ ଆଉରଙ୍ଗଜେବଙ୍କ ଶାସନକାଳରେ ବ୍ୟାଘାତପ୍ରାପ୍ତ ହୋଇଥିଲା । ଇଂରେଜମାନେ ଏ ସୁଯୋଗର ପୂର୍ଣ୍ଣ ବିନିଯୋଗ କରିବାକୁ ଭୁଲି-ନ'ଥିଲେ । ପ୍ରଥମ ଅବସ୍ଥାରେ ଇଂରେଜମାନେ ମୁସଲମାନମାନଙ୍କ-ଠାରୁ ସହଯୋଗ ପାଇପାରି ନ ଥିଲେ । ବିଶେଷତଃ ବଙ୍ଗଳାର ମୁସଲମାନ ନବାବ ସିରାଜ, ମହୀଶୂରର ଟିପୁ ସୁଲତାନ୍, ହାଇଦରା-ବାଦର ନିଜାମ ଓ ଦିଲ୍ଲୀର ନାମମାତ୍ର ମୋଗଲ ବାଦଶାହ ଆଦି ମୁସଲମାନ ଶାସକମାନେ ଇଂରେଜମାନଙ୍କ ସହ ବିଭିନ୍ନ ସମୟରେ ଯୁଦ୍ଧ କରିଥିଲେ ଓ ଇଂରେଜମାନଙ୍କୁ ଭାରତଭୂମିରୁ ବିତାଡ଼ିତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ତେଣୁ ଇଂରେଜମାନେ ହିନ୍ଦୁ ଜମିଦାର ଓ ଶେଠମାନଙ୍କୁ ହାତ କରିବାକୁ ଲାଗିଲେ ।

ସିରାଜଙ୍କୁ ପରାସ୍ତ କରିବା ପାଇଁ ହିନ୍ଦୁ ବଣିକ ରତନ ଶେଠର ସାହାଯ୍ୟ ନେଲେ । ଭାରତରେ ମୁସଲମାନମାନେ ଶାସକ ଥିଲେହେଁ ହିନ୍ଦୁମାନେ ବଡ଼ ବଡ଼ ଜମିଦାର ଏବଂ ଧନୀ ଶ୍ରେଣୀସ୍ଥ ଲୋକ ଥିଲେ ଓ ସମାଜରେ ସେମାନଙ୍କର ପ୍ରବଳ ପ୍ରତିପତି ରହିଥିଲା । ତେଣୁ ମୁସଲମାନ ଶାସକମାନଙ୍କ ଠାରୁ କ୍ଷମତା ଲାଭ କରିବା ପାଇଁ ଇଂରେଜ ବେପାରୀମାନେ ହିନ୍ଦୁମାନଙ୍କ ସହଯୋଗ ଲୋଡ଼ିଥିଲେ ଓ ନାନା କୂଟନୀତିର ଆଶ୍ରୟ ନେଇଥିଲେ । କାରଣ ବ୍ରିଟିଶ ଲୋକେ ଭଲକରି ବୁଝିଥିଲେ ଯେ ହିନ୍ଦୁ-ମୁସଲମାନମାନେ ଏକଜୁଟ ହେଲେ ସେମାନଙ୍କ ପକ୍ଷରେ ଭାରତ ଶାସନ କରିବା ସମ୍ଭବ ହେବନି । ଏହିପରି ଭାବରେ ଭାରତରେ ଇଂରେଜ ସାମ୍ରାଜ୍ୟ ଦୃଢ଼ୀଭୂତ ହେଲା; କିନ୍ତୁ ୧୮୮୫ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ସ୍ଥାପିତ ହେବାପରେ ବିଶେଷତଃ ଲାଲ୍, ବାଲ୍, ପାଲ୍‌ଙ୍କ ନେତୃତ୍ୱରେ କଂଗ୍ରେସ ଆନ୍ଦୋଳନ ଫଳରେ ବ୍ରିଟିଶ ସରକାର ଉପଲବ୍ଧି କଲେ ଯେ କୌଶଳକ୍ରମେ ଭାରତୀୟମାନଙ୍କ ମଧ୍ୟରେ ଏକ ବିଭେଦ ସୃଷ୍ଟି କରି ନ ଦେଲେ ଶାସନ କରିବା ସମ୍ଭବ ହେବନି ।

ଯେତେବେଳେ ମୁସଲମାନମାନଙ୍କ ଖିଲାଫତ୍ ଆନ୍ଦୋଳନ କଂଗ୍ରେସ ଆନ୍ଦୋଳନ ସହ ସାମିଲ ହୋଇଗଲା, ବ୍ରିଟିଶ ସରକାର ଆତଙ୍କ ଗଣିଲେ ଏବଂ ଏ ଦେଶରେ ସାଂପ୍ରଦାୟିକତା ସୃଷ୍ଟି କରି ମୁସଲମାନମାନଙ୍କୁ ହିନ୍ଦୁମାନଙ୍କ ବିରୁଦ୍ଧରେ ବ୍ୟବହାର କରିବା ପାଇଁ କୂଟନୀତି ପ୍ରୟୋଗ କରିବାକୁ ଲାଗିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ମୁସଲମାନମାନଙ୍କୁ ସଂଗଠିତ କରି ହିନ୍ଦୁମାନଙ୍କ ବିରୁଦ୍ଧରେ ବ୍ୟବହାର କରିବା ପାଇଁ ଇଂରେଜ ସରକାର ଯେଉଁ ଚକ୍ରାନ୍ତ ଚଳାଇଥିଲେ, ତାହା ଆତ୍ମପ୍ରକାଶ ପାଇଲା ମୁସଲିମ୍ ଲିଗ୍ ଗଠନରେ ।

**ବ୍ରିଟିଶ ସରକାରଙ୍କ ଚକ୍ରାନ୍ତ**—ଜିନ୍ନା ନାମକ ଏକ ମୁସଲମାନ ଶିକ୍ଷିତ ଯୁବକ ବ୍ରିଟିଶ ସରକାରଙ୍କ ହାତବାରିସୀ ରୂପେ କାର୍ଯ୍ୟ କରିବାକୁ ଲାଗିଲେ ଏବଂ ମୁସଲିମ୍‌ଲିଗ୍ ଦଳର ଶୁଭ ଦେଲେ । ଏ ଦେଶରେ ସାମ୍ପ୍ରଦାୟିକ ଭାବ ସୃଷ୍ଟି କରିବା ପାଇଁ ବ୍ରିଟିଶ ସରକାରଙ୍କ କୂଟ ଚକ୍ରାନ୍ତ ଗୋଲଟେବୁଲ ବୈଠକରେ ପଦାରେ ପଡ଼ି ଯାଇଥିଲା । ଗୋଲଟେବୁଲ ବୈଠକରେ ଇଂରେଜ ସରକାର ସାମ୍ପ୍ରଦାୟିକ ପ୍ରଶ୍ନ ଉଠାଇବାରୁ ଗାନ୍ଧିଜୀ ବୈଠକ ବର୍ଜନ କରିଥିଲେ । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରି ସ୍ୱାଧୀନତା ଆନ୍ଦୋଳନକୁ ଦବାଇଦେବାପାଇଁ ବ୍ରିଟିଶ ସରକାର ଭାବିଥିଲେ । ଭାରତୀୟମାନେ ନିଜ ନିଜ ମଧ୍ୟରେ କଳହ ଛାଡ଼ି ନ ଥିବାରୁ ସ୍ୱାଧୀନତା ଲାଭ କରିବା ପାଇଁ ଯୋଗ୍ୟ ହୋଇ ନାହାନ୍ତି ବୋଲି ଇଂରେଜ ସରକାର ବିଶ୍ୱଦରବାରରେ ପ୍ରଚାର ଚଳାଇ ଥିଲେ; କିନ୍ତୁ ବ୍ରିଟିଶ ସରକାରର ଏ ସମସ୍ତ ଚେଷ୍ଟା ସତ୍ତ୍ୱେ ମୁକ୍ତି ଆନ୍ଦୋଳନ ଦବି ନ ଥିଲା, ବରଂ ଦିନକୁ ଦିନ ବଳବତ୍ତର ହୋଇଥିଲା । ଅନ୍ୟ ଦିଗରେ ପ୍ରଥମ ମହାଯୁଦ୍ଧ ପରେ ଇଂଲଣ୍ଡର ଅର୍ଥନୈତିକ ପରିସ୍ଥିତି ଦିନକୁ ଦିନ ଶୋଚନୀୟ ହୋଇ ପଡ଼ୁଥିଲା ଓ ୧୯୩୦ ମସିହାରେ ଅର୍ଥନୈତିକ ବିପର୍ଯ୍ୟୟ ଚରମ ସୀମା ସ୍ପର୍ଶ କରିଥିଲା । ଏପରି ପରିସ୍ଥିତିରେ ସମସ୍ୟାବହୁଳ ଭାରତବର୍ଷକୁ ବେଶି ଦିନ ଶାସନ କରିବା ସମ୍ଭବ ନୁହେଁ, ଏହା ଇଂରେଜ ସରକାର ଅନୁଭବ କଲେ; କିନ୍ତୁ ସ୍ୱାଧୀନତା ଲାଭ ପରେ ଏହି ଉପ-ମହାଦେଶ ଯଦି ଇଂଲଣ୍ଡବିରୋଧୀ ରାଷ୍ଟ୍ରରେ ପରିଣତ ହୋଇ ଏସିଆରୁ ସାମ୍ରାଜ୍ୟବାଦ ଦୂର କରିବାର ନେତୃତ୍ୱ ନିଏ, ତେବେ ଇଂଲଣ୍ଡକୁ ସାରା ଏସିଆ ମହାଦେଶରୁ ବହିଷ୍କୃତ ହେବାକୁ ପଡ଼ିବ ଏକଥା ଇଂରେଜ ଜାତି ବେଶ୍ ହୃଦୟଙ୍ଗମ କରିଥିଲେ । ତେଣୁ ଭାରତରେ

ଏକ ସ୍ଥାୟୀ ସମସ୍ୟା ସୃଷ୍ଟି କରି ଦିଆଗଲେ ସ୍ୱାଧୀନତା ପରେ ଭାରତ ଅନ୍ତଃଯୁଦ୍ଧରେ ଜଡ଼ିତ ହୋଇ ପଡ଼ିବ ଓ ଫଳତଃ ଏସିଆର ନେତୃତ୍ୱ ନେବା ଦୂରେ ଥାଉ ଇଂଲଣ୍ଡର ସାହାଯ୍ୟ ବ୍ୟତୀତ ତିଷ୍ଠି ପାରିବ ନାହିଁ । ଏହି କୁଚକ୍ରାର ବଶବର୍ତ୍ତୀ ହୋଇ ବ୍ରିଟିଶ ସରକାର ଏ ଦେଶରେ ସାମ୍ପ୍ରଦାୟିକତା ସୃଷ୍ଟି କରିବା ପାଇଁ ସବୁମନ୍ତେ କୁଚେଷ୍ଟା କରିଥିଲେ । ଭାରତୀୟ ମୁସଲମାନମାନଙ୍କର ଏକ ସ୍ୱତନ୍ତ୍ର ରାଷ୍ଟ୍ରଗଠନ ପ୍ରସ୍ତାବକୁ ସମର୍ଥନ ଜଣାଇବା ମୂଳରେ ଭାରତକୁ ବିଭାଗ କରି ଦୁର୍ବଳ କରିବା ସଙ୍ଗେ ସଙ୍ଗେ ନାନାଦି ସମସ୍ୟା ସୃଷ୍ଟି କରାଇବାର ମନୋବୃତ୍ତି ଇଂରେଜ ସରକାରଙ୍କର ଥିଲା । ଇଂରେଜ ଜାତିର (Divide and Rule) ବିଭକ୍ତ କରି ଶାସନ କରିବା ନୀତିର ଚରମ ପରିଣତି—ଭାରତ ପାକିସ୍ଥାନ ସୃଷ୍ଟି । ପାକିସ୍ଥାନର ଯଥାର୍ଥ ସ୍ରଷ୍ଟା ଇଂରେଜ ଜାତି; ଜିନ୍ନା କେବଳ ନିମିତ୍ତ ମାତ୍ର ଥିଲେ । ଶ୍ରୀକୃଷ୍ଣ ଅର୍ଜ୍ଜୁନକୁ ରଥୀ କରି ନିଜେ ସାରଥି ବେଶରେ ମହାଭାରତ ଯୁଦ୍ଧ ପରିଚାଳନା କରିଥିବା ପରେ ଇଂରେଜ ସରକାର ଜିନ୍ନାଙ୍କୁ ନେତା ରୂପେ ସଜାଇ ନିଜେ ପାକିସ୍ଥାନ ଗଠନର ସମସ୍ତ ଯୋଗାଡ଼ କରାଇଥିଲେ ।

ଭାରତକୁ କେବଳ ଦୁଇ ଭାଗରେ ବିଭକ୍ତ କରାଇ ବ୍ରିଟିଶ ସରକାର ସନ୍ତୁଷ୍ଟ ନ ଥିଲେ, ଭାରତ ଦେଶୀୟ ରାଜ୍ୟଗୁଡ଼ିକୁ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବାପାଇଁ ମଧ୍ୟ ଚକ୍ରାନ୍ତ କରିଥିଲେ । ତେଣୁ ଭାରତ ସ୍ୱାଧୀନତା ଲାଭ କରିବା ସଙ୍ଗେ ସଙ୍ଗେ ସମଗ୍ର ଦେଶୀୟ ରାଜ୍ୟ ଗୁଡ଼ିକ ନିଜ ଇଚ୍ଛାମତେ ଯେ କୌଣସି ରାଷ୍ଟ୍ରସଙ୍ଘରେ ଯୋଗ ଦେବାପାଇଁ ଅଥବା ସ୍ୱାଧୀନରାଷ୍ଟ୍ରରେ ପରିଣତ ହେବାପାଇଁ ସ୍ୱାଧୀନତା ପ୍ରଦାନ କରାଯାଇଥିଲା । ଦେଶୀୟ ରାଜ୍ୟଗୁଡ଼ିକ ଭାରତ ବାହାରର ଦେଶ ନୁହନ୍ତି । ମୋଗଲବନ୍ଦୀ ଅର୍ଥାତ୍ ଯେଉଁ ଅଞ୍ଚଳକୁ ବ୍ରିଟିଶ

ସରକାର ସିଧା ସଳଖ ଶାସନ କରୁଥିଲେ ତାହାହିଁ କେବଳ ଭାରତ ଓ ଦେଶୀୟ ରାଜ୍ୟଗୁଡ଼ିକ ଭାରତ ବାହାର ରାଜ୍ୟ ଏବଂ ସେମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ୱାଧୀନତା ପ୍ରଦାନ ଆବଶ୍ୟକ, ଏପରି ଭାବିବା ବ୍ରିଟିଶ ସରକାରଙ୍କ ମୂର୍ଖତା ଥିଲା ।

ହିମଗିରିଠାରୁ କୁମାରିକା ପର୍ଯ୍ୟନ୍ତ, କାଶ୍ମୀର ଭୂଖଣ୍ଡଠାରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ଭାରତବର୍ଷ । ଭାରତ ସ୍ୱାଧୀନ ହେବା ଅର୍ଥ ଏ ସମସ୍ତ ଅଞ୍ଚଳ ସ୍ୱାଧୀନ ହେବା । ଦେଶୀୟ ରାଜ୍ୟଗୁଡ଼ିକୁ ସ୍ୱତନ୍ତ୍ର ସ୍ୱାଧୀନତା ପ୍ରଦାନ କରିବା ଅର୍ଥ ସେମାନଙ୍କର ସ୍ୱତନ୍ତ୍ର ମତ ଅଛି ବୋଲି ସ୍ୱୀକାର କରିଯିବା । ଏସବୁ ମୂଳରେ ଭାରତରୁ ଦେଶୀୟ ରାଜ୍ୟଗୁଡ଼ିକ ଅଲଗା କରି ଏକାଧିକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ଥିଲା ଓ ଫଳତଃ ଭାରତବର୍ଷ ଖଣ୍ଡ ବିଖଣ୍ଡିତ ହୋଇ ନିଜର ଶକ୍ତି ସାମର୍ଥ୍ୟ ହରାଇବା ସଙ୍ଗେ ସଙ୍ଗେ ଅନ୍ତଃଯୁଦ୍ଧରେ ଲିପ୍ତ ରହି ପୁନଃ ପରାଧୀନତା ପାଶରେ ଆବଦ୍ଧ ହୋଇ ପଡ଼ିଥାନ୍ତା, କିନ୍ତୁ ସର୍ଦ୍ଦାର ବଲ୍ଲଭଭାଇଙ୍କ ବିଚକ୍ଷଣ ନେତୃତ୍ୱ ବ୍ରିଟିଶ ସରକାରଙ୍କ ଏ କୂଟମତକୁ କାର୍ଯ୍ୟରେ ପରିଣତ କରାଇ ଦେଇ ନ ଥିଲା । ସେହି ଲୌହମାନବ ଅବିଳମ୍ବେ ପାଞ୍ଚ ଶହ ଦେଶୀୟ ରାଜ୍ୟକୁ ଭାରତ ସହ ସାମିଲ କରିବାପାଇଁ ସମର୍ଥ ହୋଇଥିଲେ । ମାତ୍ର ୨୪ ଘଣ୍ଟାର ସଂଘର୍ଷ ପରେ ହାଇଦ୍ରାବାଦ ଭାରତ ପୁନସ୍ତନର ଅନ୍ତର୍ଭୁକ୍ତ ହେଲା । ମାତ୍ର କାଶ୍ମୀର ପ୍ରଶ୍ନ ଅମୀମାଂସିତ ରହିଗଲା ।

**ଅବାଞ୍ଛିତ ଭଦ୍ରଲୋକ**— ଏହି ପୃଷ୍ଠଭୂମି ଉପରେ କାଶ୍ମୀର ସମସ୍ୟାର ଆଲୋଚନା ଆବଶ୍ୟକ । ଯେଉଁମାନେ ସାମ୍ପ୍ରଦାୟିକତାର ଦୁହାଇ ଦେଇ ନିଜ ସ୍ୱାର୍ଥ ଦୃଷ୍ଟିରୁ ମହାନ୍

ଭାରତବର୍ଷକୁ ଦୁଇ ଭାଗ କଲେ, ଦେଶୀୟ ରାଜ୍ୟଗୁଡ଼ିକୁ ସ୍ୱତନ୍ତ୍ର ରାଷ୍ଟ୍ରରେ ପରିଣତ କରିବାପାଇଁ କୂଟନୀତି ପ୍ରୟୋଗ କରିଥିଲେ ଓ ଭାରତ ପାକିସ୍ଥାନ ମଧ୍ୟରେ ଅହିନକୁଳ ସମ୍ପର୍କ ସ୍ଥାପନ କରାଇ କୃତ୍ରିମ କାଶ୍ମୀର ସମସ୍ୟା ସୃଷ୍ଟି କରିଛନ୍ତି, ଆଜି ଆମ୍ଭେ ଭାରତ ପାକିସ୍ଥାନବାସୀ ଯେତେବେଳେ ପୂର୍ବ ଐତିହ୍ୟ ଭୁଲି ଆମର ପବିତ୍ର ଭୂମି ଉପରେ ପରସ୍ପର ମଧ୍ୟରେ ହଣାହଣି ହେଉଛନ୍ତି, ଜାତିସଂଘ ଗୃହରେ ପରସ୍ପର ପ୍ରତି କୁତ୍ସାରଚନା କରୁଛନ୍ତି, ସେତେବେଳେ ସେହିମାନେ ମିଳାମିଶା କରାଇବାପାଇଁ ଭଦ୍ରଲୋକ ସାଜି ଉପସ୍ଥିତ ହେଉଛନ୍ତି ଓ ସେହି ବିଷକୁମ୍ଭ ପୟୋମୁଖଧାରୀ ଭଦ୍ରଲୋକମାନେ ଶାନ୍ତିବାଣୀ ଶୁଣାଇ ଆମ୍ଭମାନଙ୍କୁ ମୋହିତ କରୁଛନ୍ତି । ଏହି ମହାନ୍ ପ୍ରାଚୀନ ଦେଶକୁ ନିଜ ନିଜର ସ୍ୱାର୍ଥସିଦ୍ଧି ପାଇଁ ଯେଉଁମାନେ କୌଶଳ କରି ଦୁଇ ଖଣ୍ଡ କରିଛନ୍ତି ଓ ସେହି ଦୁଇ ଭାଗ ମଧ୍ୟରେ କଳି ଲଗାଇ ଦେଇ ମଜା ଦେଖୁଛନ୍ତି, ସେମାନଙ୍କୁ ଭବିଷ୍ୟତ ମାନବ-ସମାଜ କଦାପି କ୍ଷମା ଦେଇ ନ ପାରେ । କେବଳ ଭାରତ ନୁହେଁ, ଭିଏତ୍‌ନାମ, କୋରିଆ ଓ ଜର୍ମାନୀ ଆଦି ଅନେକ ଦେଶ ଆଜି ଏହିମାନଙ୍କ କୌଶଳରେ ଏକାଧିକ ଭାଗରେ ବିଭକ୍ତ ହୋଇ-ପଡ଼ିଛନ୍ତି । ଦକ୍ଷିଣ ଭିଏତ୍‌ନାମ୍‌ବାସୀ ଉତ୍ତର ଭିଏତ୍‌ନାମ୍‌ବାସୀଙ୍କୁ ବିଦେଶୀରୂପେ ସମ୍ବୋଧନ କରୁଛନ୍ତି, ପୂର୍ବ-ଜର୍ମାନୀ ଲୋକେ ପଶ୍ଚିମ-ଜର୍ମାନୀକୁ ପ୍ରବେଶ କରିବାକୁ ଅକ୍ଷମ, ଭାରତ-ପାକିସ୍ଥାନବାସୀ ଯୁଦ୍ଧରତ । ଇଂଲଣ୍ଡରୁ ସ୍କଟଲାଣ୍ଡକୁ ଅଲଗା କରି ଦିଆଗଲେ, ନିଉୟର୍କ ଓ ୱାସିଂଟନକୁ ଦୁଇ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରାହେଲେ ଅଥବା ରୁଷିଆକୁ ବିଭକ୍ତ କରାହେଲେ ବିଶ୍ୱପ୍ରଳୟ ସୃଷ୍ଟି ହୋଇଯିବ । କିନ୍ତୁ ଭାରତ, ଭିଏତ୍‌ନାମ୍ ବା କୋରିଆ ଆଦି ଦେଶ ଦୁର୍ବଳ ହୋଇଥିବାରୁ ସେମାନଙ୍କୁ ଭାଗ ଭାଗ କରି ବଡ ବଡ଼

ରାଷ୍ଟ୍ରମାନେ ନିଜ ନିଜର ସୁବିଧା ହାସଲ କରିବେ, କରୁଛନ୍ତି ଓ ପୁନଶ୍ଚ କାଶ୍ମୀର ପରି ନାନା କୃତ୍ରିମ ସମସ୍ୟା ସୃଷ୍ଟି କରାଇ ସେମାନଙ୍କୁ ଶାନ୍ତିରେ ରହିବାକୁ ଦେଉନାହାନ୍ତି ।

ଭାରତରେ ଏକତାର ଅଭାବ ରହିଛି, ତାହା ଆମେ ସ୍ୱୀକାର କରୁଛୁ । ଏ ଦେଶରେ ସାମ୍ପ୍ରଦାୟିକ ଦଙ୍ଗାହଙ୍ଗାମି ହୋଇଥିଲା, ଏହା ଐତିହାସିକ ସତ୍ୟ । ପାକିସ୍ଥାନ ରାଷ୍ଟ୍ର ଗଠନପାଇଁ ମୁସଲିମ୍ ଲିଗ୍ ପ୍ରବଳ ଆନ୍ଦୋଳନ ଚଳାଇଥିଲା, ଏକଥା ସମସ୍ତେ ଜାଣନ୍ତି । କାଶ୍ମୀର ପାଇଁ ଭାରତ ପାକିସ୍ଥାନ ଯୁଦ୍ଧ କରୁଛନ୍ତି, ଏହା ଜଗତ ଦେଖୁଛି ।

କିନ୍ତୁ ଏସବୁ ପାଇଁ ଦୁଇଟି ଜିନିଷ ଦାୟୀ—(୧) ଭାରତୀୟମାନଙ୍କର ଅଜ୍ଞତା ଓ (୨) ବ୍ରିଟିଶ ଜାତିର ଚତୁରତା । ଚତୁର ବ୍ରିଟିଶ ଜାତି ଆମ୍ଭମାନଙ୍କ ଅଜ୍ଞତାର ସୁଯୋଗ ନେଇ ଏ ଦେଶରେ ଯେଉଁ ବିଷକାଠ ସଞ୍ଚାର କରି ଯାଇଛନ୍ତି; ତାହା ଆମ୍ଭମାନଙ୍କୁ ଛାରଖାର କରି ସାରିଲାଣି ।

**ଭାରତର ଅଖଣ୍ଡତା**— ଏହି ମହାନ୍ ଭାରତବର୍ଷରେ କେଉଁ ଆଦି କାଳରୁ ନାନା ଗୋଷ୍ଠୀ, ଜାତି, ସମ୍ପ୍ରଦାୟ ଓ ବିଭିନ୍ନ ଧର୍ମାବଲମ୍ବୀ ଏକତ୍ର ବାସ କରି ଆସିଛନ୍ତି ଏବଂ ସେମାନଙ୍କ ମଧ୍ୟରେ ନାନା ବିଭିନ୍ନତା ପାର୍ଥକ୍ୟ ସତ୍ତ୍ୱେ ସେମାନେ ପ୍ରତ୍ୟେକ ଭାରତୀୟ ରୂପେ ଗର୍ବ ଅନୁଭବ କରି ଆସୁଛନ୍ତି । ଭାରତ ଇତିହାସରେ ରାଜା ରାଜା ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ, ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ଓ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଯୁଦ୍ଧ, କଳହ, ଉତ୍ତେଜନା, ସଂଘର୍ଷ ବହୁ ଥର ଦେଖାଦେଇଛି

ସତ, କିନ୍ତୁ କେବେ କେହି ଭାରତବର୍ଷରୁ ଅଲଗା ହୋଇ ସ୍ୱତନ୍ତ୍ର ରାଷ୍ଟ୍ର ଗଠନର ପରିକଳ୍ପନା ବି କରି ନ ଥିଲେ । ଭାରତବର୍ଷ ମଧ୍ୟରେ ବେଳେ ବେଳେ ଶତାଧିକ ସ୍ୱାଧୀନ ରାଜ୍ୟ ମୁଣ୍ଡଟେକି ଉଠିଛି, ପୁଣି ବେଳେ ବେଳେ ସବୁ ରାଜ୍ୟଗୁଡ଼ିକ ଏକ ଶାସନଡୋରିରେ ବନ୍ଧା ହୋଇଛନ୍ତି; କିନ୍ତୁ କେବେ କୌଣସି ରାଜ୍ୟ ଭାରତବର୍ଷରୁ ସ୍ୱତନ୍ତ୍ର ବୋଲି ମତପ୍ରକାଶ କରି ନାହାନ୍ତି । ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ, ଚୋଳ, ପାଣ୍ଡ୍ୟ, ସିନ୍ଧୁ, ପଞ୍ଜାବ ଓ କାମରୂପ ଆଦି ରାଜ୍ୟଗୁଡ଼ିକ ଏକ ସମୟରେ ସ୍ୱାଧୀନ ଥିଲେ ଓ ପରସ୍ପର ମଧ୍ୟରେ କଳିହରତ ଥିଲେ; କିନ୍ତୁ ସେମାନେ ସମସ୍ତେ ଭାରତବର୍ଷର ଏକ ଏକ ଅଙ୍ଗ ରୂପେ ପରିଚୟ ଦେଇ ଆସିଛନ୍ତି ଏବଂ ଭାରତବର୍ଷରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଢ଼ିବାର ସ୍ପର୍ଦ୍ଧା ପ୍ରକାଶ କରିନାହାନ୍ତି ।

ସେହିପରି ଭାରତର ବିଭିନ୍ନାଞ୍ଚଳରେ ବହୁ ଭାଷାଭାଷୀ ଲୋକେ ଆଦିକାଳରୁ ଏକତ୍ର ବାସକରି ଆସୁଛନ୍ତି । ବଙ୍ଗଳା, ଓଡ଼ିଆ, ହିନ୍ଦୀ, ଗୁଜରାଟୀ, ପଞ୍ଜାବୀ, ଆସାମୀ, ତେଲଗୁ, ତାମିଲ୍ ଆଦି ବହୁଭାଷା ଭାରତର ବିଭିନ୍ନ ଅଞ୍ଚଳରେ କଥିତ ହେଉଥିଲେ ମଧ୍ୟ ପ୍ରତ୍ୟେକ ଭାଷାଭାଷୀ ନିଜର ଭାଷାକୁ ଏକ ଭାରତୀୟ ଭାଷାରୂପେ ପରିଚିତ କରାଇ ଆସିଛନ୍ତି ।

ଏହି ମହାନ୍ ଦେଶରେ ହିନ୍ଦୁ, ବୌଦ୍ଧ, ଜୈନ, ଇସଲାମ ଓ ଖ୍ରୀଷ୍ଟିୟାନ୍ ଧର୍ମର ପ୍ରଚାର ହୋଇଛି ଓ ଏହି ବିଭିନ୍ନ ଧର୍ମାବଲମ୍ବୀ-ମାନେ ବହୁକାଳରୁ ଏକ ସଙ୍ଗେ ବସବାସ କରି ଆସିଛନ୍ତି । ସେମାନଙ୍କ ମଧ୍ୟରେ ବହୁ ପ୍ରତିଦ୍ୱନ୍ଦିତା ଓ ସଂଘର୍ଷ ସତ୍ତ୍ୱେ କୌଣସି ଧର୍ମାବଲମ୍ବୀ ଭାରତରୁ ଅଲଗା ହୋଇଯାଇ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଠନର ପରି-

କଲ୍ପନା କରି ନ ଥିଲେ । ଏକ ସମୟରେ ଏ ଦେଶରେ ହିନ୍ଦୁ ଓ ବୌଦ୍ଧଧର୍ମାବଲମ୍ବୀମାନଙ୍କ ସଂଘର୍ଷ ଭୟଙ୍କର ଆକାର ଧାରଣ କରିଥିଲା; କିନ୍ତୁ ଏହାକୁ ମୂଳ ଭିତ୍ତି କରି ଭାରତୀୟ ହିନ୍ଦୁ ଓ ବୌଦ୍ଧମାନେ ପରସ୍ପର ଅଲଗା ରାଷ୍ଟ୍ର ଗଠନ କରିବାର ଚିନ୍ତା କରି ନ ଥିଲେ । ସେହିପରି ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ପ୍ରଥମ ଅବସ୍ଥାରେ ସଂଘର୍ଷ, ଉତ୍ତେଜନା ଓ ଯୁଦ୍ଧ ଘନ ଘନ ସଂଘଟିତ ହେଉଥିଲା; କିନ୍ତୁ ଏସବୁ ସତ୍ତ୍ୱେ ଭାରତ ଖଣ୍ଡ ବିଖଣ୍ଡିତ ହୋଇ ନ ଥିଲା । ମୁସଲମାନ ରାଜାମାନେ ନିଜ ନିଜକୁ ଭାରତର ବାଦଶାହ-ରୂପେ ପରିଚୟ ଦେଉଥିଲେ ଓ ସେଥିରେ ସେମାନେ ଗର୍ବ ଅନୁଭବ କରୁଥିଲେ । ମୋଗଲ ବାଦଶାହ ଆକବର, ହିନ୍ଦୁ ମୁସଲମାନ-ମାନଙ୍କୁ ମୈତ୍ରୀରଜ୍ଜୁରେ ବନ୍ଧନ କରି ଭାରତର ଯେଉଁ ଅଭୂତପୂର୍ବ ଉନ୍ନତିସାଧନ କରିଥିଲେ ତାହାର ସବିଶେଷ ବର୍ଣ୍ଣନା ଅନାବଶ୍ୟକ । ହିନ୍ଦୁ-ମୁସଲମାନ ଶିଳ୍ପୀ ଏକତ୍ର ବସି ତାଜମହଲର ରୂପ ଯୋଜନା କରିଥିଲେ, ହିନ୍ଦୁ-ମୁସଲମାନ ଯୋଦ୍ଧାମାନେ ମିଳିତ ହୋଇ ମୋଗଲ ସାମ୍ରାଜ୍ୟର ପ୍ରତିରକ୍ଷା ଦାୟିତ୍ୱ ବହନ କରିଥିଲେ । ହିନ୍ଦୁ-ମୁସଲମାନ ପଣ୍ଡିତମାନେ ମିଳିତ ହୋଇ ମୋଗଲ ଦରବାରରେ ଦର୍ଶନ ଆଲୋଚନା କରୁଥିଲେ ଏବଂ ପରସ୍ପରର ଉତ୍ସବରେ ଯୋଗ ଦେଇ ଆନନ୍ଦ ଲାଭ କରୁଥିଲେ । ଅବଶ୍ୟ ଆଉରଙ୍ଗଜେବଙ୍କ ଧର୍ମାନ୍ଧତା ଓ ଅତ୍ୟାଚାର ହିନ୍ଦୁ-ମୁସଲମାନ ଏକତା ଉପରେ କୁଠାରାଘାତ କରିଥିଲା ଓ ଏହା ଫଳରେ ମୋଗଲ ଶାସନ ବିରୁଦ୍ଧରେ ଭାରତର ବିଭିନ୍ନାଞ୍ଚଳରେ ସଶସ୍ତ୍ର ବିଦ୍ରୋହ ସଂଘଟିତ ହୋଇଥିଲା ।

ଶାସକ ଅତ୍ୟାଚାରୀ ଓ ପ୍ରଜାପୀଡ଼କ ହେଲେ ଦେଶରେ ଅସନ୍ତୋଷ ବ୍ୟାପିବା ସ୍ୱାଭାବିକ । ବିଦ୍ରୋହ ଏହି ଅସନ୍ତୋଷର ବହିଃ-

ପ୍ରକାଶ । ଆଓରଙ୍ଗଜେବ ମୁସଲମାନ ରାଜା ଥିବାରୁ ଦେଶରେ ବିଦ୍ରୋହ ହୋଇଥିଲା ଏପରି ଭାବିବା ଠିକ୍ ନୁହେଁ । ମୂଳତଃ ଆଓରଙ୍ଗଜେବ ଅତ୍ୟାଚାରୀ ଥିବାରୁ ବିଦ୍ରୋହ ସଂଘଟିତ ହୋଇଥିଲା । ଫ୍ରାନ୍ସର ସମ୍ରାଟ ଷୋଡ଼ଶ ଲୁଇ ଖ୍ରୀଷ୍ଟିୟାନ୍ ଥାଇ ମଧ୍ୟ ଫ୍ରାନ୍ସର ଖ୍ରୀଷ୍ଟିୟାନ ପ୍ରଜାମାନେ ତାଙ୍କୁ ଶୂଳୀଖୁଣ୍ଟରେ ବସାଇ-ଥିଲେ । ଇଂଲଣ୍ଡର ଚାର୍ଲସ୍ କମ୍ବା ରୁଷିଆର ଜାର୍ ଶାସନ ବିରୁଦ୍ଧରେ ବିଦ୍ରୋହ ହୋଇଥିଲା । କୌଣସି ଧର୍ମଗତ କାରଣ ଯୋଗୁ ନୁହେଁ, ସେମାନଙ୍କର ଶାସନଗତ ଦୁଷ୍କ୍ରିୟା ହେତୁ । ହିନ୍ଦୁ ଶାସକ ଅତ୍ୟାଚାରୀ ହେଲେ ତାଙ୍କ ବିରୁଦ୍ଧରେ ହିନ୍ଦୁମାନେ ଯେ ସ୍ୱର ନ ଉଠାଇବେ ଏହା କୁହାଯାଇ ନ ପାରେ ।

ଆକବର ସୁଶାସକ ଥିବାରୁ ତାଙ୍କୁ ହିନ୍ଦୁମାନେ ଭାରତର ଶାସକରୂପେ ସାଦରେ ଗ୍ରହଣ କରିଥିଲେ, ଏପରି କି ରାଣାପ୍ରତାପ ଆକବରଙ୍କ ବିରୁଦ୍ଧରେ ଜଣେ ମାତ୍ର ହିନ୍ଦୁରାଜାଙ୍କୁ ପ୍ରବର୍ତ୍ତାଇ ପାରି ନ ଥିଲେ; କିନ୍ତୁ ଆଓରଙ୍ଗଜେବ କୁଶାସକ ଥିବାରୁ ତାଙ୍କର କୁଶାସନ ବିରୁଦ୍ଧରେ ଭାରତର ବିଭିନ୍ନାଞ୍ଚଳରେ ସଶସ୍ତ୍ର ବିଦ୍ରୋହ ଦେଖା ଯାଇଥିଲା । ତେଣୁ ଏହାକୁ ହିନ୍ଦୁ-ମୁସଲମାନ ସଂଘର୍ଷ କୁହାଯାଇ ନ ପାରେ । ଏଠାରେ ମରହଟ୍ଟାମାନଙ୍କ କଥା ଆଲୋଚନା କଲେ ଦେଖିବା, ଛତ୍ରପତି ଶିବାଜୀ ନିଜର ସୁଶାସନ ପାଇଁ ଲୋକ-ମାନଙ୍କର ପ୍ରିୟ ହୋଇଥିଲେ; କିନ୍ତୁ ପରବର୍ତ୍ତୀ ସମୟରେ ମରହଟ୍ଟା-ମାନେ ଅତ୍ୟାଚାରୀ ହୋଇ ପଡ଼ିବାରୁ ଏବଂ ଲୁଣ୍ଠନ କରିବା ମନୋବୃତ୍ତି ଧରିବାରୁ ଭାରତରେ ଲୋକପ୍ରିୟତା ହରାଇ ବସିଲେ ଓ ଶେଷକୁ ମରହଟ୍ଟା ରାଜ୍ୟ ଲୋପ ପାଇଲା । ବର୍ଗୀମାନଙ୍କର ଲୁଟତରାଜ ଓ ଲୁଣ୍ଠନ ଆଜି ବି ଦକ୍ଷିଣ ଭାରତୀୟଙ୍କ ମନରେ ଶିହରଣ ସୃଷ୍ଟି କରେ ।

କଳ୍ପନା କରି ନ ଥିଲେ । ଏକ ସମୟରେ ଏ ଦେଶରେ ହିନ୍ଦୁ ଓ ବୌଦ୍ଧଧର୍ମାବଲମ୍ବୀମାନଙ୍କ ସଂଘର୍ଷ ଭୟଙ୍କର ଆକାର ଧାରଣ କରିଥିଲା; କିନ୍ତୁ ଏହାକୁ ମୂଳ ଭିତ୍ତି କରି ଭାରତୀୟ ହିନ୍ଦୁ ଓ ବୌଦ୍ଧମାନେ ପରସ୍ପର ଅଲଗା ରାଷ୍ଟ୍ର ଗଠନ କରିବାର ଚିନ୍ତା କରି ନ ଥିଲେ । ସେହିପରି ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ପ୍ରଥମ ଅବସ୍ଥାରେ ସଂଘର୍ଷ, ଉତ୍ତେଜନା ଓ ଯୁଦ୍ଧ ଘନ ଘନ ସଂଘଟିତ ହେଉଥିଲା; କିନ୍ତୁ ଏସବୁ ସତ୍ତ୍ୱେ ଭାରତ ଖଣ୍ଡ ବିଖଣ୍ଡିତ ହୋଇ ନ ଥିଲା । ମୁସଲମାନ ରାଜାମାନେ ନିଜ ନିଜକୁ ଭାରତର ବାଦଶାହ-ରୂପେ ପରିଚୟ ଦେଉଥିଲେ ଓ ସେଥିରେ ସେମାନେ ଗର୍ବ ଅନୁଭବ କରୁଥିଲେ । ମୋଗଲ ବାଦଶାହ ଆକବର, ହିନ୍ଦୁ ମୁସଲମାନ-ମାନଙ୍କୁ ମୈତ୍ରୀରଜ୍ଜୁରେ ବନ୍ଧନ କରି ଭାରତର ଯେଉଁ ଅଭୂତପୂର୍ବ ଉନ୍ନତିସାଧନ କରିଥିଲେ ତାହାର ସବିଶେଷ ବର୍ଣ୍ଣନା ଅନାବଶ୍ୟକ । ହିନ୍ଦୁ-ମୁସଲମାନ ଶିଳ୍ପୀ ଏକତ୍ର ବସି ତାଜମହଲର ରୂପ ଯୋଜନା କରିଥିଲେ, ହିନ୍ଦୁ-ମୁସଲମାନ ଯୋଦ୍ଧାମାନେ ମିଳିତ ହୋଇ ମୋଗଲ ସାମ୍ରାଜ୍ୟର ପ୍ରତିରକ୍ଷା ଦାୟିତ୍ୱ ବହନ କରିଥିଲେ । ହିନ୍ଦୁ-ମୁସଲମାନ ପଣ୍ଡିତମାନେ ମିଳିତ ହୋଇ ମୋଗଲ ଦରବାରରେ ଦର୍ଶନ ଆଲୋଚନା କରୁଥିଲେ ଏବଂ ପରସ୍ପରର ଉତ୍ସବରେ ଯୋଗ ଦେଇ ଆନନ୍ଦ ଲାଭ କରୁଥିଲେ । ଅବଶ୍ୟ ଆଉରଙ୍ଗଜେବଙ୍କ ଧର୍ମାନ୍ଧତା ଓ ଅତ୍ୟାଚାର ହିନ୍ଦୁ-ମୁସଲମାନ ଏକତା ଉପରେ କୁଠାରାଘାତ କରିଥିଲା ଓ ଏହା ଫଳରେ ମୋଗଲ ଶାସନ ବିରୁଦ୍ଧରେ ଭାରତର ବିଭିନ୍ନାଞ୍ଚଳରେ ସଶସ୍ତ୍ର ବିଦ୍ରୋହ ସଂଘଟିତ ହୋଇଥିଲା ।

ଶାସକ ଅତ୍ୟାଚାରୀ ଓ ପ୍ରଜାପୀଡ଼କ ହେଲେ ଦେଶରେ ଅସନ୍ତୋଷ ବ୍ୟାପିବା ସ୍ୱାଭାବିକ । ବିଦ୍ରୋହ ଏହି ଅସନ୍ତୋଷର ବହିଃ-

ପ୍ରକୋଶ । ଆଉରଙ୍ଗଜେବ ମୁସଲମାନ ରାଜା ଥିବାରୁ ଦେଶରେ ବିଦ୍ରୋହ ହୋଇଥିଲା ଏପରି ଭାବିବା ଠିକ୍ ନୁହେଁ । ମୂଳତଃ ଆଉରଙ୍ଗଜେବ ଅତ୍ୟାଚାରୀ ଥିବାରୁ ବିଦ୍ରୋହ ସଂଘଟିତ ହୋଇଥିଲା । ଫ୍ରାନ୍ସର ସମ୍ରାଟ ଷୋଡ଼ଶ ଲୁଇ ଖ୍ରୀଷ୍ଟିୟାନ୍ ଥାଇ ମଧ୍ୟ ଫ୍ରାନ୍ସର ଖ୍ରୀଷ୍ଟିୟାନ ପ୍ରଜାମାନେ ତାଙ୍କୁ ଶୂଳୀଖୁଣ୍ଟରେ ବସାଇ-ଥିଲେ । ଇଂଲଣ୍ଡର ଚାର୍ଲସ୍ କମ୍ବା ରୁଷିଆର ଜାର୍ ଶାସନ ବିରୁଦ୍ଧରେ ବିଦ୍ରୋହ ହୋଇଥିଲା । କୌଣସି ଧର୍ମଗତ କାରଣ ଯୋଗୁ ନୁହେଁ, ସେମାନଙ୍କର ଶାସନଗତ ଦୁଷ୍କ୍ରିୟା ହେତୁ । ହିନ୍ଦୁ ଶାସକ ଅତ୍ୟାଚାରୀ ହେଲେ ତାଙ୍କ ବିରୁଦ୍ଧରେ ହିନ୍ଦୁମାନେ ଯେ ସ୍ୱର ନ ଉଠାଇବେ ଏହା କୁହାଯାଇ ନ ପାରେ ।

ଆକବର ସୁଶାସକ ଥିବାରୁ ତାଙ୍କୁ ହିନ୍ଦୁମାନେ ଭାରତର ଶାସକରୂପେ ସାଦରେ ଗ୍ରହଣ କରିଥିଲେ, ଏପରି କି ରାଣାପ୍ରତାପ ଆକବରଙ୍କ ବିରୁଦ୍ଧରେ ଜଣେ ମାତ୍ର ହିନ୍ଦୁ ରାଜାଙ୍କୁ ପ୍ରବର୍ତ୍ତାଇ ପାରି ନ ଥିଲେ; କିନ୍ତୁ ଆଉରଙ୍ଗଜେବ କୁଶାସକ ଥିବାରୁ ତାଙ୍କର କୁଶାସନ ବିରୁଦ୍ଧରେ ଭାରତର ବିଭିନ୍ନାଞ୍ଚଳରେ ସଶସ୍ତ୍ର ବିଦ୍ରୋହ ଦେଖା ଯାଇଥିଲା । ତେଣୁ ଏହାକୁ ହିନ୍ଦୁ-ମୁସଲମାନ ସଂଘର୍ଷ କୁହାଯାଇ ନ ପାରେ । ଏଠାରେ ମରହଟ୍ଟାମାନଙ୍କ କଥା ଆଲୋଚନା କଲେ ଦେଖିବା, ଛତ୍ରପତି ଶିବାଜୀ ନିଜର ସୁଶାସନ ପାଇଁ ଲୋକ-ମାନଙ୍କର ପ୍ରିୟ ହୋଇଥିଲେ; କିନ୍ତୁ ପରବର୍ତ୍ତୀ ସମୟରେ ମରହଟ୍ଟା-ମାନେ ଅତ୍ୟାଚାରୀ ହୋଇ ପଡ଼ିବାରୁ ଏବଂ ଲୁଣ୍ଠନ କରିବା ମନୋବୃତ୍ତି ଧରିବାରୁ ଭାରତରେ ଲୋକପ୍ରିୟତା ହରାଇ ବସିଲେ ଓ ଶେଷକୁ ମରହଟ୍ଟା ରାଜ୍ୟ ଲୋପ ପାଇଲା । ବର୍ଗୀମାନଙ୍କର ଲୁଣ୍ଠତରାଜ ଓ ଲୁଣ୍ଠନ ଆଜି ବି ଦକ୍ଷିଣ ଭାରତୀୟଙ୍କ ମନରେ ଶିହରଣ ସୃଷ୍ଟି କରେ ।

ଶିବାଜୀ ଜଣେ ନିରପେକ୍ଷ ଶାସକ ଥିଲେ । ଇସଲାମ୍ ଧର୍ମପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ଭକ୍ତି ଥିବାର ଇତିହାସରୁ ପ୍ରମାଣ ମିଳେ । ତେଣୁ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ସେ ଯେଉଁ ସଂଗ୍ରାମର ନେତୃତ୍ୱ ନେଇଥିଲେ, ତାହା ଧର୍ମ ପାଇଁ ନୁହେଁ, ପରନ୍ତୁ ଯଥେଚ୍ଛାଚାରର ଶାସନର ମୂଳୋତ୍ପାଟନ କରି ଦେଶରେ ନିର୍ମଳ ସୁଶାସନର ପ୍ରତିଷ୍ଠା ପାଇଁ ।

ହିନ୍ଦୁ-ମୁସଲମାନ ଏ ଦେଶରେ ଶହ ଶହ ବର୍ଷ ଧରି ରହିବା ଫଳରେ ସେମାନଙ୍କ ମଧ୍ୟରୁ ସାମ୍ପ୍ରଦାୟିକ ଭାବ ଆପେ ଆପେ ଉଭେଇ ଯାଇଥିଲା ଓ ଉଭୟ ଭାରତମାତାଙ୍କର ସନ୍ତାନ ଏ ଧାରଣା ବଦ୍ଧମୂଳ ହୋଇଥିଲା । ଏ ଦେଶର ସ୍ୱାଧୀନତା ରକ୍ଷା ପାଇଁ ଉଭୟ ହିନ୍ଦୁ-ମୁସଲମାନ ହସି ହସି ଆତ୍ମବଳି ଦେଉଥିଲେ । ଏ ଦେଶରେ ବିଦେଶୀ ଇଂରେଜ ଜାତିକୁ ପୂରାଇ ନ ଦେବା ପାଇଁ ସିରାଜଙ୍କ ତ୍ୟାଗ ଓ ଟିପୁ ସୁଲତାନଙ୍କ ବୀରତ୍ୱ ଏ ଦେଶବାସୀ ଭୁଲିପାରିବେ ନାହିଁ । ସିପାହୀ-ବିଦ୍ରୋହବେଳେ ଜାତୀୟ ନେତାମାନେ ଦିଲ୍ଲୀର ନାମ ମାତ୍ର ସମ୍ରାଟ ସାହ ଆଲମଙ୍କୁ ଭାରତର ସମ୍ରାଟରୂପେ ଘୋଷଣା କରିବା ମୂଳରେ, ହିନ୍ଦୁ-ମୁସଲମାନ ଏହି ଦୁଇଜାତି ମଧ୍ୟରେ କିପରି ସୁସମ୍ପର୍କ ସ୍ଥାପିତ ହୋଇଯାଇଥିଲା ତାହାର ପ୍ରମାଣ ମିଳେ । ସିପାହୀ-ବିଦ୍ରୋହ ବେଳେ ହିନ୍ଦୁ-ମୁସଲମାନମାନଙ୍କର ଅଦ୍ଭୁତ ମିଳନ ଓ ସାହା ଆଲ୍ମଙ୍କୁ ଭାରତ ସମ୍ରାଟରୂପେ ଅଭିଷିକ୍ତ କରିବା ପାଇଁ ହିନ୍ଦୁମାନଙ୍କର ଘୋଷଣା ଫଳରେ ବ୍ରିଟିଶ୍ ସରକାରଙ୍କର ହୃତ୍କମ୍ପ ଜାତ ହୋଇଥିଲା । ପବିତ୍ର ଭାରତଭୂମିରୁ ବ୍ରିଟିଶ ଜାତିକୁ ବିତାଡ଼ିତ କରିବା ପାଇଁ ହିନ୍ଦୁ-ମୁସଲମାନ୍ଙ୍କ ସମ୍ମିଳିତ ଉଦ୍ୟମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ସିପାହୀବିଦ୍ରୋହ ।

ଏହାପରେ ଆରମ୍ଭ ହୁଏ ବ୍ରିଟିଶ୍ ଜାତିର ଚିରାଚରିତ ଭେଦନୀତିର ପ୍ରୟୋଗ । ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଭାରତରେ ଭେଦନୀତି ଯଥାର୍ଥ ଭାବରେ ପ୍ରୟୋଗ କରି ପାରି ନ ଥିବାରୁ ଏପରି ଏକ ହିନ୍ଦୁ ମୁସଲମାନ ସମ୍ମିଳିତ ବିଦ୍ରୋହ ହୋଇଗଲା ବୋଲି ବ୍ରିଟିଶ ସରକାର ଅନୁଭବ କଲେ ଓ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଶାସନରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

**ସବୁ ଧର୍ମର ମିଳନସ୍ଥଳ**—ଏହିପରି ଭାବରେ ଭାରତ ଇତିହାସକୁ ପର୍ଯ୍ୟାଲୋଚନା କଲେ ଦେଖାଯିବ ବିଭିନ୍ନ ନଦନଦୀ ସାଗରରେ ମିଳିତ ହୋଇ ସେମାନଙ୍କର ସତ୍ତା ହରାଇଥିବା ପରି ବହୁ ଧର୍ମଗୋଷ୍ଠୀ, ଜାତି, ସଂପ୍ରଦାୟ, ଭାଷା ଓ ସଂସ୍କୃତି ମହାନ୍ ଭାରତୀୟ ସଭ୍ୟତା ସହ ମିଳିତ ହୋଇ ସେମାନଙ୍କର ସତ୍ତା ହରାଇଛନ୍ତି ଓ ଏହି ପ୍ରାଚୀନ ସଭ୍ୟତା ହଜାର ହଜାର ବର୍ଷ ଧରି ଏ ଦେଶରେ ତିଷ୍ଠି ରହିଛି । ଭାରତୀୟ ସଭ୍ୟତାର ସମୃଦ୍ଧି ଓ ଅଭିବୃଦ୍ଧି ପାଇଁ ଏ ସମସ୍ତଙ୍କର ଉଲ୍ଲେଖଯୋଗ୍ୟ ଅବଦାନ ରହିଛି । ବିଖ୍ୟାତ ରୋମୀୟ ସଭ୍ୟତା ଓ ପ୍ରାଚୀନ ଗ୍ରୀସ୍ ସଭ୍ୟତା କାଳଗର୍ଭରେ ଲୀନ ହୋଇ ଯାଇଛି; କିନ୍ତୁ ଭାରତୀୟ ସଭ୍ୟତା ପୁରାଣ ଯୁଗରୁ ଏ ପର୍ଯ୍ୟନ୍ତ ଜାଜ୍ୱଲ୍ୟମାନ ରହିଛି ।

ଭାରତୀୟ ସଭ୍ୟତାର ଅର୍ଥ କେବଳ ହିନ୍ଦୁ-ସଭ୍ୟତା ନୁହେ । ଭାରତୀୟ ସଂସ୍କୃତି କହିଲେ କେବଳ ଆର୍ଯ୍ୟ-ସଂସ୍କୃତିକୁ ବୁଝାଏ ନାହିଁ । ସେହିପରି ଭାରତୀୟ କହିଲେ କେବଳ ହିନ୍ଦୁ ନୁହନ୍ତି । ନିଜର ମହାନୁଭବତା ଓ ବିରାଟତ୍ୱ ଯୋଗୁଁ ବହୁ ଉତ୍ଥାନ ପତନ ମଧ୍ୟରେ ଭାରତୀୟ ସଭ୍ୟତା ଏ ପର୍ଯ୍ୟନ୍ତ ତିଷ୍ଠି ପାରିଛି ।

**ଆମର ଚରମ ଶତ୍ରୁ**—କିନ୍ତୁ ଇଂରେଜ ଜାତି ନାନାଦି କୌଶଳ ପ୍ରୟୋଗ କରି ଏ ମହାନ୍ ଦେଶରେ ସାମ୍ପ୍ରଦାୟିକତା ସୃଷ୍ଟି କରାଇ ଭାରତୀୟ ସଭ୍ୟତା ମୂଳରେ କୁଠାରାଘାତ କରିଛନ୍ତି । କାଶ୍ମୀର ସମସ୍ୟା ଏକ କୃତ୍ରିମ ସମସ୍ୟା ଓ ଏହାକୁ ଜାଣିଶୁଣି ସୃଷ୍ଟି କରାଯାଇଛି । ଭାରତ ପାକିସ୍ଥାନ ମଧ୍ୟରେ ଚିର ବୈରତା ସୃଷ୍ଟି ପାଇଁ କାଶ୍ମୀର ସମସ୍ୟାର ଜନ୍ମ; କିନ୍ତୁ ଦେଶବିଭାଗ ବେଳେ କାଶ୍ମୀର ପ୍ରଶ୍ନ ଉଠା ନ ଯାଇ ବ୍ରିଟିଶ ସରକାର ଯେଉଁ କୌଶଳ ପ୍ରୟୋଗ କଲେ ତାହା ଚିରଦିନ ପାଇଁ ଦୁଇ ଦେଶ ମଧ୍ୟରେ ଏକ ବିରାଟ ସମସ୍ୟା ସୃଷ୍ଟି କଲା । ଏ ସମସ୍ୟାର ସମାଧାନ ସହଜସାଧ୍ୟ ନୁହେଁ, କାରଣ ସମାଧାନ ଉଦ୍ଦେଶ୍ୟରେ ଏ ସମସ୍ୟାର ସୃଷ୍ଟି କରାଯାଇ ନାହିଁ । ଭାରତ-ପାକିସ୍ଥାନ ମଧ୍ୟରେ ସଦ୍‌ଭାବ ଫେରି ଆସିବା ପାଇଁ ଇଂଲଣ୍ଡରେ ଯେଉଁ ବ୍ୟାକୁଳତା ପ୍ରକାଶ ପାଉଛି ତାହା କେବଳ କୁମ୍ଭୀରକାନ୍ଦଣା ସଙ୍ଗେ ତୁଳନୀୟ । ଭାରତ-ପାକିସ୍ଥାନ ମଧ୍ୟରେ ସଦ୍‌ଭାବ ଫେରିଆସୁ, ଏହା ତାଙ୍କର କାମ୍ୟ ନୁହେଁ । ଭାରତ-ପାକିସ୍ଥାନ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା ହୋଇ ପାରିଲେ, ପାଶ୍ଚାତ୍ୟ ଗୋଷ୍ଠୀଙ୍କ ଚକ୍ରାନ୍ତ ପଦାରେ ପଡ଼ିଯିବ ଓ ସେମାନଙ୍କର ଉଦ୍ଦେଶ୍ୟ ସଫଳ ହେବ ନାହିଁ । ଭାରତ-ପାକିସ୍ଥାନ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା କରିବା ପାଇଁ ଭାରତକୁ ଦୁଇ ଭାଗ କରାଯାଇ ନାହିଁ । ଭାରତ ଦୁଇ ଭାଗ ହୋଇ ନ ଥିଲେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଆପେ ଆପେ ସଦ୍‌ଭାବ ଫେରି ଆସିଥାନ୍ତା । ଗୋଟାଏ ଦେଶରେ ବିଭିନ୍ନ ଧର୍ମାବଲମ୍ବୀ ଓ ବିଭିନ୍ନ ଭାଷାଭାଷୀ ଓ ସମ୍ପ୍ରଦାୟ ଲୋକ ବାସ କରୁଥିବା ବେଳେ ସାମୟିକ ଉତ୍ତେଜନା ଓ ସଂଘର୍ଷ ଦେଖାଯିବା ସ୍ୱାଭାବିକ । କିନ୍ତୁ ଏହି ସାମୟିକ ଉତ୍ତେଜନା ଓ ସଂଘର୍ଷକୁ କେନ୍ଦ୍ର କରି କେଉଁଠି ରାଷ୍ଟ୍ରର ବିଭକ୍ତୀକରଣ ହୁଏ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାର

ଦକ୍ଷିଣାଞ୍ଚଳ ଓ ଉତ୍ତରାଞ୍ଚଳ ମଧ୍ୟରେ ଏକଦା ଭୀଷଣ ସଂଘର୍ଷ ଏବଂ ଯୁଦ୍ଧ ଘନଘଟା ସୃଷ୍ଟି ହୋଇଥିଲା । ତାହା ତୁଳନାରେ ନୂଆଖାଲିର ହତ୍ୟାକାଣ୍ଡ କିମ୍ବା ଜିନ୍ନାଙ୍କ ପ୍ରତ୍ୟକ୍ଷ ସଂଗ୍ରାମ ଘୋଷଣା କିଛି ବଡ଼ କଥା ନୁହେଁ; କିନ୍ତୁ ଯୁକ୍ତରାଷ୍ଟ୍ର ତ ଦୁଇଭାଗ ହେଲା ନ; କାଳକ୍ରମେ ଉଭୟ ଅଞ୍ଚଳର ଲୋକମାନେ ମିଳିମିଶି ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତା-ବରଣ ମଧ୍ୟରେ ଚଳିଲେ । ଭାରତକୁ ଦୁଇ ଭାଗ କରାଯାଇ ନ ଥିଲେ କାଳକ୍ରମେ ହିନ୍ଦୁ-ମୁସଲମାନମାନେ ମିଳିମିଶି ଚଳିଥାନ୍ତେ । ମୁସଲମାନମାନେ ଏ ଦେଶରେ ନୂଆ ବାସ କରୁନାହାଁନ୍ତି । ଯେଉଁମାନେ ହଜାର ହଜାର ବର୍ଷଧରି ହିନ୍ଦୁମାନଙ୍କ ସହ ଚଳି ଆସିଥିଲେ, ଆଜି ଚଳି ନ ଥାନ୍ତେ କାହିଁକି ?

ଭାରତକୁ ଦୁଇ ଭାଗ କରିଦିଆହେବା ଫଳରେ ହିନ୍ଦୁ-ମୁସଲମାନ ସମ୍ପର୍କ ବରଂ ତିକ୍ତ ହୋଇଗଲା ଓ ସେ ତିକ୍ତତା ଦିନକୁ ଦିନ ବଢ଼ିବାକୁ ଲାଗିଲା । ନୂଆଖାଲି ହଣାକଟାରେ ଯେତିକି ଧନ ଜୀବନ ବିପନ୍ନ ହୋଇଥିଲା, ଦେଶବିଭାଗ ପରେ ଅନେକ ଘଟଣାରେ ଓ ବିଶେଷତଃ କଚ୍ଛର ରାନ୍ ଅଞ୍ଚଳ ଓ କାଶ୍ମୀରରେ ତଥା ପଞ୍ଜାବ ଅଞ୍ଚଳରେ ହୋଇଥିବା ଯୁଦ୍ଧରେ ତାହା ଅପେକ୍ଷା କେତେ ଗୁଣ ଅଧିକ ଧନ ଜୀବନ ବିପନ୍ନ ହେଲା, ତାହା ପ୍ରତ୍ୟେକ ଅନୁଭବ କରୁଥିବେ । ଜିନ୍ନାଙ୍କ ପ୍ରତ୍ୟକ୍ଷ ସଂଗ୍ରାମ ଡାକରାରେ ଏ କ୍ଷୟକ୍ଷତିର ଏକଶତାଂଶ କ୍ଷତି ହୋଇ ନ ଥିଲା । ଦେଶବିଭାଗ ନ ହେଲେ ଦେଶରେ ଶାନ୍ତି ଉପୁଜିବ ନାହିଁ କି ଦେଶରେ କୌଣସି ପ୍ରକାର ପ୍ରଗତିମୂଳକ କାର୍ଯ୍ୟ କରିହେବ ନାହିଁ ବୋଲି ଯେଉଁ ଭାରତୀୟ ନେତାମାନେ ଯୁକ୍ତି କରୁଥିଲେ ସେମାନଙ୍କର ଯୁକ୍ତିକୁ ସମୟ ଭୁଲ ବୋଲି ପ୍ରମାଣିତ କରିଛି । ଗତ କାଶ୍ମୀର ଯୁଦ୍ଧରେ ଦୁଇ ପକ୍ଷରୁ

ଯେତେ ଶହ କୋଟି ଟଙ୍କା ବ୍ୟୟିତ ହେଲା ଓ ଯେତେ କ୍ଷୟ ଘଟିଲା ଦେଶବିଭାଗ ପୂର୍ବରୁ ସମସ୍ତ ସାମ୍ପ୍ରଦାୟିକ ଗଣ୍ଡଗୋଳରେ ସେତିକି କ୍ଷୟକ୍ଷତି ହୋଇ ନ ଥିଲା ।

**ଗାନ୍ଧିଜୀ ଅସନ୍ତୁଷ୍ଟ**—ଗାନ୍ଧିଜୀ ଦେଶବିଭାଗକୁ ସମର୍ଥନ କରି ନ ଥିଲେ । ସ୍ୱାଧୀନତା ଉତ୍ସବରେ ଦେଶସାରା ନିମଗ୍ନ ଥିବା-ବେଳେ ସେ ମୌନବ୍ରତ ଅବଲମ୍ବନ କରିଥିଲେ ଓ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଥିଲା ତାଙ୍କ ପକ୍ଷରେ ଚରମ ନିରାନନ୍ଦର ଦିବସ । ଦେଶକୁ ବିଭକ୍ତ କରି ସ୍ୱାଧୀନତା ଲାଭ କରିବାକୁ ଗାନ୍ଧିଜୀ ପସନ୍ଦ କରି ନ ଥିଲେ ଓ ଏହା ତାଙ୍କୁ ମର୍ମନ୍ତୁଦ ଯନ୍ତ୍ରଣା ଦେଇଥିଲା । ଦେଶବିଭାଗ ଭଳି ଏକ ନିଷ୍ଠୁର ନିଷ୍ପତ୍ତିକୁ ଗ୍ରହଣ କରିଯିବା ଅପେକ୍ଷା ଆଉ ପାଞ୍ଚବର୍ଷ ପରାଧୀନ ରହିଥିଲେ କିଛି ଓଲଟ ପାଲଟ ହୋଇ ଯାଇ ନ ଥାନ୍ତା । ଇତିହାସ ପାଞ୍ଚ ତିନି ବର୍ଷରେ ସୀମାବଦ୍ଧ ନୁହେଁ । ଆଉ ଅଧିକ ପାଞ୍ଚବର୍ଷ ଇଂରେଜ ସରକାର ଭାରତକୁ ଶାସନ କରିଥିଲେ ଇତିହାସର ଗତି ବଦଳି ଯାଇ ନ ଥାନ୍ତା; କିନ୍ତୁ ଦେଶବିଭାଗ ଫଳରେ ଭାରତ ଇତିହାସର ଗତି ବଦଳି ଗଲା । ଭାରତ ଇତିହାସରେ ଏପରି ମର୍ମନ୍ତୁଦ ଘଟଣା କେବେ ଘଟିନାହିଁ । ଦେଶବିଭାଜନ ଭାରତ ପକ୍ଷରେ ଚରମ ଦୁର୍ଭାଗ୍ୟ ଥିଲା । ତାହାର କୁଫଳ ଆମକୁ ଯୁଗ-ଯୁଗଧରି ଭୋଗିବାକୁ ପଡ଼ୁଥିବ । ଆମର ଏହି ଦୁଷ୍କୃତି ଆଜି କାଶ୍ମୀର-ଭୂତରୂପେ ଆମକୁ ଗୋଡ଼ାଉଛି । ଏଥିରୁ ନିସ୍ତାର ନାହିଁ ।

# ରାଧାନାଥ ସାହିତ୍ୟରେ ନାରୀ

ରାଧାନାଥଙ୍କ ନାରୀଚରିତ୍ରମାନଙ୍କ ମଧ୍ୟରେ ପାର୍ବତୀ, କୌଶଲ୍ୟା ଚନ୍ଦ୍ରଭାଗା, ନନ୍ଦିକା, ଉଷା, ଲଳିତା ଓ ଗୌରୀ ପ୍ରଧାନ । ଏଥିମଧ୍ୟରୁ ନନ୍ଦିକା ଓ ଲଳିତା ଏବଂ ପାର୍ବତୀ ଓ ଉଷାକୁ ସମଧର୍ମୀ କୁହା-ଯାଇପାରେ । ଗୌରୀ, ଚନ୍ଦ୍ରଭାଗା ଓ କୌଶଲ୍ୟା ମଧ୍ୟରେ ଚରିତ୍ରଗତ ବିଶେଷ ସାମଞ୍ଜସ୍ୟ ନାହିଁ ।

ନନ୍ଦିକା ଓ ଲଳିତା ଏକ ଶ୍ରେଣୀର ନାରୀ । ଉଭୟେ କାମାତୁରା । ଉଭୟଙ୍କୁ ଚରିତ୍ରହୀନାରୂପେ ଅଭିଯୁକ୍ତ କରା-ଯାଇପାରେ । ଲଳିତା ବନଭ୍ରମଣବେଳେ ଏକ ସୁନ୍ଦର ପୁରୁଷକୁ ଦେଖି କାମାସକ୍ତା ହୋଇପଡ଼ିଛି । ଛଦ୍ମବେଶୀ ପୁରୁଷ ବିମଳା ନିଜର ପ୍ରକୃତ ପରିଚୟ ଦେବା ପରେ ଲଳିତା ନିଜର ଭ୍ରମ ବୁଝି ପାରି ଲଜ୍ଜିତା ହୋଇଛି ସତ, କିନ୍ତୁ ବିମଳାକୁ ନିଜ ସାଥିରେ ରାଜ-ନବରକୁ ନେଇଯାଇଛି । ଉଭୟେ ଏକ ପଲଙ୍କରେ ଶୟନ କରିଛନ୍ତି । ଖାଇବା ପିଇବା ସବୁ ଏକ ସାଙ୍ଗରେ ହୋଇଛି । ଜଣେ ଅପରିଚିତା ନାରୀ ସହ ଏକ ରାଜଜେମାର ଏପରି ବନ୍ଧୁତ୍ୱସ୍ଥାପନ ଏବଂ ଅବାଧ ମିଳାମିଶା ପ୍ରଶଂସନୀୟ ନୁହେଁ । ପୁନଶ୍ଚ ଯଯାତି ଭଉଣୀ ବିମଳାଠାରୁ ଏସବୁ ଜାଣିବା ପରେ ନାରୀବେଶ ଧରି ରାଜଅନ୍ତଃପୁରେ ପ୍ରବେଶ କରି ରାଜଜେମା ସହ ଏକ ପଲଙ୍କରେ ଶୟନ କରିଛି । ରାତିରେ ନିଜର ପୁରୁଷତ୍ୱ ପ୍ରାପ୍ତି ବର୍ଣ୍ଣନା କରିବାବେଳେ ଲଳିତାର ଚିତ୍ତରେ କୌଣସି ବିକାର ଆସି ନ; ବରଂ ସେ ଏହାକୁ ସୁବର୍ଣ୍ଣସୁଯୋଗ ମନେକରି ତା ସହ ଗୁପ୍ତ ପ୍ରେମରେ ମଜ୍ଜି ରହିଛି ।

ଏହା ଏକ ଆଦର୍ଶ ନାରୀର ଚିତ୍ର ନୁହେଁ । ଏହା ଯେ ଏକ ମାତ୍ର କର୍ମ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା ସତୀ ନାରୀର ଧର୍ମ ନୁହେଁ ।

ଉତ୍କଳ ରାଜାଧିରାଜ ସୁବର୍ଣ୍ଣ କେଶରୀଙ୍କ କନ୍ୟା ନନ୍ଦକା । ଚୋଡ଼ଗଙ୍ଗଦେବ ଆକ୍ରମଣକାରୀ; କେଶରୀବଂଶର ମୂଳୋତ୍ପାଟନ କରି ଉତ୍କଳର ସାର୍ବଭୌମତ୍ୱ ଅଧିକାର କରିବାକୁ ବିରାଟ ସେନା-ବାହିନୀ ସହ ଉତ୍କଳଦେଶ ଆକ୍ରମଣ କରିଛି । ବୃଦ୍ଧ ସୁବର୍ଣ୍ଣକେଶରୀ ବୀରତ୍ୱର ଚରମ ପରାକାଷ୍ଠା ଦେଖାଇ ଭୀଷଣ ଯୁଦ୍ଧରେ ପ୍ରବୃତ୍ତ ରହିଛନ୍ତି ।

କାମାସକ୍ତା ନନ୍ଦକା ଚନ୍ଦ୍ରଶାଳାରୁ ରଣକ୍ଷେତ୍ରରେ ଚୋଡ଼ଗଙ୍ଗଙ୍କୁ ଦେଖି କାମାସକ୍ତ ହୋଇପଡ଼ିଛି । ଲଳିତା ଠିକ୍ ଏହିପରି ଛଦ୍ମବେଶୀ ପୁରୁଷ ବିମଳାର ପ୍ରଥମ ଦର୍ଶନରେ କାମାସକ୍ତ ହୋଇପଡ଼ିଥିଲା ।

କିନ୍ତୁ ନନ୍ଦକା ଅପେକ୍ଷା ଲଳିତା ଭାଗ୍ୟବତୀ । ଯଯାତିଙ୍କୁ ପାଇବା ପାଇଁ ଲଳିତାକୁ କିଛି ପରିଶ୍ରମ କରିବାକୁ ପଡ଼ିନି । ବିନା ପରିଶ୍ରମରେ ଅନ୍ତଃପୁରରେ ଯଯାତିଙ୍କୁ ପାଇ ଲଳିତା ନିଜର ପ୍ରଣୟ-ପିପାସା ମେଣ୍ଟନ କରିଛି ।

କିନ୍ତୁ ନନ୍ଦକା ହତଭାଗିନୀ । ଚୋଡ଼ଗଙ୍ଗ ଓ ଯଯାତି ଏକ ଶ୍ରେଣୀର ପୁରୁଷ ନୁହନ୍ତି । ଚୋଡ଼ଗଙ୍ଗ ବୀର, ଦୁର୍ଦ୍ଧର୍ଷ ଓ ଗମ୍ଭୀର ଆତ୍ମବିଶ୍ୱାସୀ ଅଟନ୍ତି । ସେ ରାଜକୁମାରୀ ଲାଭପାଇଁ ରାଜ୍ୟ ଆକ୍ରମଣ କରି ନାହାନ୍ତି ।

ଯଯାତି କାପୁରୁଷ ପରି ମଗଧରୁ ଭଗ୍ନୀ ସହ ପଳାଇ ଆସିଥିଲେ । ମନ୍ଦିରରେ ରାଜକୁମାରୀ ଲଳିତାକୁ ଦେଖିବା ପରେ ତାକୁ ଲାଭ କରିବା ପାଇଁ ସେ ବ୍ୟାକୁଳ ହୋଇପଡ଼ିଥିଲେ । ଯଯାତି ସ୍ତ୍ରୈଣ,

ପ୍ରେମପାଗଳ କିନ୍ତୁ ହୃଦୟବାନ୍ । ଶୈରଗଙ୍ଗ ନିଷ୍ଠୁର, ଦୁର୍ଦ୍ଧର୍ଷ ବୀର ଓ ରାଜ୍ୟଲୋଭୀ । ଉଭୟ ସମାନଧର୍ମୀ ନୁହଁନ୍ତି ।

ତେଣୁ ନନ୍ଦିକାର ଜୀବନ ହାହୁତାଶମୟ ହୋଇପଡ଼ିଲା । ତା'ର ଅନୁପମ ରୂପ ଲାବଣ୍ୟରେ ମୁଗ୍‌ଧ ହେବା ପରିବର୍ତ୍ତେ ଶୈରଗଙ୍ଗ ତା'କୁ ତିରସ୍କାର କରି ନିଷ୍ଠୁର ବାଣୀ ଶୁଣାଇଛନ୍ତି ।

"ପବିତ୍ର କେଶରୀବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ ।
ତିନି ମହାପାପ ଏକ କରଣିରେ
ଅଦ୍ଭୁତ ସାଧନା ତୋର ଧରଣୀରେ ।
କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣକାର୍ଯ୍ୟେ ? ତୁ ପୁଣି ଅବଳା ।"

ନନ୍ଦିକା ଦୁଃଖ ନୈରାଶ୍ୟରେ ଭାଙ୍ଗିପଡ଼ୁଛି । ଆଜି ତା ଦୁଃଖରେ ଜଣେ କେହି ଆହା କରିବାକୁ ନାହିଁ । ସେ ଏ ନିର୍ଲଜ୍ଜ ମୁଖ ଆଉ କାହାକୁ ଦେଖାନ୍ତା ? ଆତ୍ମହତ୍ୟା ହିଁ ତା'ର ସର୍ବୋତ୍କୃଷ୍ଟ ପନ୍ଥା । ତା'ହିଁ ସେ କରିଛି ।

"ଦୁଃଖିମାକୁ ଆହା ବିଧି ହେଲେ ବାମ
ଏ ଜୀବର ହେଲା ଏହି ପରିଣାମ ।"

ନନ୍ଦିକାଜୀବନର ଏ ଯେଉଁ କରୁଣ ପରିଣତି ହେଲା, ଏହା ତା ପାପର ପ୍ରାୟଶ୍ଚିତ୍ତ । ଲଳିତାର ଜୀବନର ଏପରି କରୁଣ ପରିଣତି ହୋଇନାହିଁ । ସେ ଯଯାତିଙ୍କୁ ପତିରୂପେ ପାଇ ଆନନ୍ଦରେ ଦିନ ଅତିବାହିତ କରୁଛି । ଯଦିଓ ତା'ର ପିତା ପ୍ରଥମତଃ କ୍ରୁଦ୍ଧହୋଇ ଯଯାତିଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଇଥିଲେ, ପରେ ଦୈବବାଣୀ ଶୁଣି ତାଙ୍କୁ ଜ୍ୱାଇଁ ରୂପେ ବରଣ କରି ରାଜସିଂହାସନ ପ୍ରଦାନ କରିଛନ୍ତି ।

ନନ୍ଦିକାର ଭାଗ୍ୟରେ ଏହା ଘଟିନି । ଲଳିତା କେବଳ ଗୁପ୍ତପ୍ରେମରେ ରତ ରହି ନିଜ ସତୀତ୍ୱ ନଷ୍ଟ କରିଥିଲା । କିନ୍ତୁ ନନ୍ଦିକା ଯଥାର୍ଥରେ ତିନିଗୋଟି ଅପରାଧ କରିଛି । (୧) ଦେଶଦ୍ରୋହ (୨) ରାଜଦ୍ରୋହ (୩) ପିତୃଦ୍ରୋହ ।

ପିତାଙ୍କ ଦୈବଦତ୍ତ ମଣିକୁ ଶତ୍ରୁ ପାଦତଳେ ଅର୍ପଣ କରି ପ୍ରେମଭିକ୍ଷା କରିବାରୁ ନୀଚତମ କାର୍ଯ୍ୟ ଆଉ କଣ ଥାଇପାରେ ? ପ୍ରେମପାଇଁ ଦେଶ, ରାଜ୍ୟ ଓ ପିତାଙ୍କୁ ବଳିଦେବାକୁ ସେ ପଶ୍ଚାତ୍-ପଦ ହୋଇନାହିଁ ।

ଏଣୁ ଲଳିତାଠାରୁ ନନ୍ଦିକା ଶତଗୁଣରେ ଘୃଣ୍ୟା । ମଦ୍ୟପ ଯେପରି ଅତ୍ୟଧିକ ମଦ୍ୟପାନ ଫଳରେ ହିତାହିତ ଜ୍ଞାନ ହରାଇ-ପାରେ, ନନ୍ଦିକା ସେପରି ଅତ୍ୟଧିକ ପ୍ରେମାସକ୍ତ ହୋଇ ନିଜର ବୁଦ୍ଧି ବିବେକ ସବୁକିଛି ହରାଇବସି ନର୍କଭୂମିକୁ ଓହ୍ଲାଇ ଯାଇଛି ।

କିନ୍ତୁ ନନ୍ଦିକାର ପରିସ୍ଥିତିରେ ଲଳିତା ଥିଲେ ସେହିପରି ଅପକର୍ମ ସେ ନ କରିଥାନ୍ତା, ତାହା କିପରି ବିଶ୍ୱାସ କରାଯିବ ? ତେଣୁ ଉଭୟେ ଏକ ଶ୍ରେଣୀର ନାରୀ । କେବଳ ଭିନ୍ନ ଭିନ୍ନ ପରିସ୍ଥିତିରେ ସେମାନଙ୍କର ଭିନ୍ନ ଭିନ୍ନ କାର୍ଯ୍ୟକଳାପ ଆମର ଦୃଷ୍ଟିପଥାରୂଢ଼ ହୋଇଛି ।

ପାର୍ବତୀ ଓ ଉଷା ଅନ୍ୟ ଏକ ଶ୍ରେଣୀର ନାରୀ । ଉଭୟ ନାରୀ ହୋଇ ବି ଅବଳା ନୁହଁନ୍ତି । ପୁରୁଷର ଅହଙ୍କାର ଓ ମଦଗର୍ବ ଚୂର୍ଣ୍ଣ କରିବାପାଇଁ ଯେପରି ସେମାନଙ୍କର ଜନ୍ମ । ନାରୀ ନିର୍ଯ୍ୟାତନାର ପ୍ରତିଶୋଧ ନେବାପାଇଁ ସେମାନେ ଦୃଢ଼ପ୍ରତିଜ୍ଞ । ଉଭୟେ ପୁରୁଷର ପୌରୁଷକୁ କୁଠାରାଘାତ କରିଛନ୍ତି । ପୁରୁଷ ନାରୀଙ୍କୁ କ୍ରୀଡ଼ା-ଳିକା ପରି ବ୍ୟବହାର କରି ଶେଷକୁ ଯେପରି ଲାଞ୍ଛିତ କରେ

ତାର ଶବ୍ଦ ପ୍ରତିଶୋଧ ନେବାପାଇଁ ଉଭୟ ରଣଚଣ୍ଡୀ ବେଶ ଧରିଛନ୍ତି ।

ଉଷା ଶପଥ କରିଛି— ଯେ ତାକୁ ଦୌଡ଼ରେ ପରାଜିତ କରି ପାରିବ ସେ ହେବ ତା'ର ସ୍ୱାମୀ; କିନ୍ତୁ ତାକୁ ପରାଜିତ କରି ନ ପାରିଲେ, ପ୍ରାଣଦଣ୍ଡରେ ଦଣ୍ଡିତ ହେବ । କେତେ ସୁକୁମାର ରାଜପୁତ୍ର ଉଷା ସହ ଦୌଡ଼ରେ ପରାଜିତ ହୋଇ ପ୍ରାଣଦଣ୍ଡ ଲାଭ କରିଛନ୍ତି, ତା'ର ସଂଖ୍ୟା ନାହିଁ ।

ପୁରୁଷ ଯେପରି ଅନ୍ୟାୟରେ ନାରୀଜୀବନ ସହ ଖେଳିପାରେ, ନାରୀ ମଧ୍ୟ ତଦ୍ରୂପ କାର୍ଯ୍ୟରେ ପଶ୍ଚାତ୍‌ପଦ ନୁହେଁ । ଗର୍ବୋନ୍ମାଦ ପୁରୁଷର ପୌରୁଷ ଉଷା ପାଖରେ ହାର ମାନିଛି । ଜଣେ ଜଣେ ହୋଇ କେତେ ରାଜପୁତ୍ର ମୃତ୍ୟୁଦଣ୍ଡ ପାଇଲେ, ତଥାପି ଉଷାର ଅଭିଳାଷ ପୂର୍ଣ୍ଣ ହେଲାନି । ଚନ୍ଦ୍ରଭାଗା, କୌଶଲ୍ୟା ଓ ନନ୍ଦିକାକୁ ଯେଉଁ ପୁରୁଷ ଜାତି ନିର୍ମମ ଭାବରେ ହତ୍ୟା କରିଛି ସେ ପୁରୁଷଜାତି ପ୍ରତି ଦୟାମାୟାର ପ୍ରଶ୍ନ କାହିଁ ?

କିନ୍ତୁ ଉଷା ନିଜକୁ ଯେତେ ନିଷ୍ଠୁର କରି ରଣଚଣ୍ଡୀ ବେଶ ଧରିଲେ ହେଁ ଶେଷକୁ ପୁରୁଷହସ୍ତରେ ପରାସ୍ତ ହୋଇଛି । ନାରୀ ହୋଇ ନାରୀସୁଲଭ ଗୁଣକୁ କେତେଦିନ ଜଳାଞ୍ଜଳି ଦେଇପାରେ ? ଜୟନ୍ତ ପ୍ରତି ଉଷା ପ୍ରେମାସକ୍ତ ହୋଇପଡ଼ି ଦୌଡ଼ରେ ଅବହେଳା କରିଛି । ଫଳରେ ଜୟନ୍ତ ହୋଇଛି ବିଜୟୀ । କିନ୍ତୁ ଏହି ପରାଜୟରେ ଉଷା ଦୁଃଖିତ ନ ହୋଇ ବରଂ ଆହ୍ଲାଦିତ ହୋଇଛି ।

"ହରାଇ ନ ହେଲା ଜୟନ୍ତର ମନେ ଯେଉଁ ହରଷ<br>
ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା-ମାନସ ।"

ନନ୍ଦିକାର ଭାଗ୍ୟରେ ଏହା ଘଟିନି । ଲଳିତା କେବଳ ଗୁପ୍ତପ୍ରେମରେ ରତ ରହି ନିଜ ସତୀତ୍ୱ ନଷ୍ଟ କରିଥିଲା । କିନ୍ତୁ ନନ୍ଦିକା ଯଥାର୍ଥରେ ତିନିଗୋଟି ଅପରାଧ କରିଛି । (୧) ଦେଶଦ୍ରୋହ (୨) ରାଜଦ୍ରୋହ (୩) ପିତୃଦ୍ରୋହ ।

ପିତାଙ୍କ ଦୈବଦତ୍ତ ମଣିକୁ ଶତ୍ରୁ ପାଦତଳେ ଅର୍ପଣ କରି ପ୍ରେମଭିକ୍ଷା କରିବାରୁ ନୀଚତମ କାର୍ଯ୍ୟ ଆଉ କଣ ଥାଇପାରେ ? ପ୍ରେମପାଇଁ ଦେଶ, ରାଜ୍ୟ ଓ ପିତାଙ୍କୁ ବଳିଦେବାକୁ ସେ ପଶ୍ଚାତ୍‌-ପଦ ହୋଇନାହିଁ ।

ଏଣୁ ଲଳିତାଠାରୁ ନନ୍ଦିକା ଶତଗୁଣରେ ଘୃଣ୍ୟା । ମଦ୍ୟପ ଯେପରି ଅତ୍ୟଧିକ ମଦ୍ୟପାନ ଫଳରେ ହିତାହିତ ଜ୍ଞାନ ହରାଇ-ପାରେ, ନନ୍ଦିକା ସେପରି ଅତ୍ୟଧିକ ପ୍ରେମାସକ୍ତ ହୋଇ ନିଜର ବୁଦ୍ଧି ବିବେକ ସବୁକିଛି ହରାଇବସି ନର୍କଭୂମିକୁ ଓହ୍ଲାଇ ଯାଇଛି ।

କିନ୍ତୁ ନନ୍ଦିକାର ପରିସ୍ଥିତିରେ ଲଳିତା ଥିଲେ ସେହିପରି ଅପକର୍ମ ଯେ ନ କରିଥାନ୍ତା, ତାହା କିପରି ବିଶ୍ୱାସ କରାଯିବ ? ତେଣୁ ଉଭୟେ ଏକ ଶ୍ରେଣୀର ନାରୀ । କେବଳ ଭିନ୍ନ ଭିନ୍ନ ପରିସ୍ଥିତିରେ ସେମାନଙ୍କର ଭିନ୍ନ ଭିନ୍ନ କାର୍ଯ୍ୟକଳାପ ଆମର ଦୃଷ୍ଟିପଥାରୂଢ଼ ହୋଇଛି ।

ପାର୍ବତୀ ଓ ଉଷା ଅନ୍ୟ ଏକ ଶ୍ରେଣୀର ନାରୀ । ଉଭୟେ ନାରୀ ହୋଇ ବି ଅବଳା ନୁହଁନ୍ତି । ପୁରୁଷର ଅହଙ୍କାର ଓ ମଦଗର୍ବ ଚୂର୍ଣ୍ଣ କରିବାପାଇଁ ଯେପରି ସେମାନଙ୍କର ଜନ୍ମ । ନାରୀନର୍ଯ୍ୟାତନାର ପ୍ରତିଶୋଧ ନେବାପାଇଁ ସେମାନେ ଦୃଢ଼ପ୍ରତିଜ୍ଞ । ଉଭୟେ ପୁରୁଷର ପୌରୁଷକୁ କୁଠାରାଘାତ କରିଛନ୍ତି । ପୁରୁଷ ନାରୀକୁ କ୍ରୀଡ଼ା-ନକା ପରି ବ୍ୟବହାର କରି ଶେଷକୁ ଯେପରି ଲାଞ୍ଛିତ କରେ

ତାର ଖାତ୍ର ପ୍ରତିଶୋଧ ନେବାପାଇଁ ଉଭୟ ରଣଚଣ୍ଡୀ ବେଶ ଧରିଛନ୍ତି ।

ଉଷା ଶପଥ କରିଛି— ଯେ ତାକୁ ଦୌଡ଼ରେ ପରାଜିତ କରି ପାରିବ ସେ ହେବ ତା'ର ସ୍ୱାମୀ; କିନ୍ତୁ ତାକୁ ପରାଜିତ କରି ନ ପାରିଲେ, ପ୍ରାଣଦଣ୍ଡରେ ଦଣ୍ଡିତ ହେବ । କେତେ ସୁକୁମାର ରାଜପୁତ୍ର ଉଷା ସହ ଦୌଡ଼ରେ ପରାଜିତ ହୋଇ ପ୍ରାଣଦଣ୍ଡ ଲାଭ କରିଛନ୍ତି, ତା'ର ସଂଖ୍ୟା ନାହିଁ ।

ପୁରୁଷ ଯେପରି ଅନ୍ୟାୟରେ ନାରୀଜୀବନ ସହ ଖେଳିପାରେ, ନାରୀ ମଧ୍ୟ ତଦ୍ରୂପ କାର୍ଯ୍ୟରେ ପଶ୍ଚାତ୍‌ପଦ ନୁହେଁ । ଗର୍ବୋନ୍ମାଦ ପୁରୁଷର ପୌରୁଷ ଉଷା ପାଖରେ ହାରି ମାନିଛି । ଜଣେ ଜଣେ ହୋଇ କେତେ ରାଜପୁତ୍ର ମୃତ୍ୟୁଦଣ୍ଡ ପାଇଲେ, ତଥାପି ଉଷାର ଅଭିଳାଷ ପୂର୍ଣ୍ଣ ହେଲାନି । ଚନ୍ଦ୍ରଭାଗା, କୌଶଲ୍ୟା ଓ ନନ୍ଦିକାକୁ ଯେଉଁ ପୁରୁଷ ଜାତି ନିର୍ମମ ଭାବରେ ହତ୍ୟା କରିଛି ସେ ପୁରୁଷଜାତି ପ୍ରତି ଦୟାମାୟାର ପ୍ରଶ୍ନ କାହିଁ ?

କିନ୍ତୁ ଉଷା ନିଜକୁ ଯେତେ ନିଷ୍ଠୁର କରି ରଣଚଣ୍ଡୀ ବେଶ ଧରିଲେ ହେଁ ଶେଷକୁ ପୁରୁଷହସ୍ତରେ ପରାସ୍ତ ହୋଇଛି । ନାରୀ ହୋଇ ନାରୀସୁଲଭ ଗୁଣକୁ କେତେଦିନ ଜଳାଞ୍ଜଳି ଦେଇପାରେ ? ଜୟନ୍ତ ପ୍ରତି ଉଷା ପ୍ରେମାସକ୍ତ ହୋଇପଡ଼ି ଦୌଡ଼ରେ ଅବହେଳା କରିଛି । ଫଳରେ ଜୟନ୍ତ ହୋଇଛି ବିଜୟୀ । କିନ୍ତୁ ଏହି ପରାଜୟରେ ଉଷା ଦୁଃଖିତ ନ ହୋଇ ବରଂ ଆହ୍ଲାଦିତ ହୋଇଛି ।

"ହରିଲ ନ ହେଲା ଜୟନ୍ତର ମନେ ଯେଉଁ ହରଷ
ହାରି ଶତଗୁଣେ ତହୁଁ ହୃଷ୍ଟ ହେଲା ଉଷା-ମାନସ ।"

ରାଜରାଣୀ ପାର୍ବତୀ । ସେ ଉଷାପରି ଶେଷ ମୁହୂର୍ତ୍ତରେ ଭାଙ୍ଗି ପଡ଼ିନାହାନ୍ତି; ବରଂ ତାଙ୍କର ତେଜ ବୃଦ୍ଧିପ୍ରାପ୍ତ ହୋଇଛି । ଉଷାପରି ପୁରୁଷର ଅତ୍ୟାଚାର ବିରୁଦ୍ଧରେ ସେ ଖଡ୍‌ଗ ତୋଳିଛନ୍ତି । କିନ୍ତୁ ଉଷା ଶେଷରେ ସ୍ୱଇଚ୍ଛାରେ ହାରି ହୃଷ୍ଟ ହେଲାବେଳେ ପାର୍ବତୀ ପୁରୁଷର ହୀନ ପୌରୁଷକୁ ପରାଜିତ କରି ବିଜୟିନୀ ହୋଇଛନ୍ତି ।

ଗଙ୍ଗେଶ୍ୱରଙ୍କ ପାଶବିକ ଅତ୍ୟାଚାର ଫଳରେ କୌଶଲ୍ୟାର ଲୋମହର୍ଷଣକାରୀ ମୃତ୍ୟୁକାହାଣୀ ଶୁଣି ପାର୍ବତୀ ଶୋକାକୁଳ ହେବା ସଙ୍ଗେ ସଙ୍ଗେ କ୍ରୋଧାନ୍ୱିତ ହୋଇପଡ଼ିଛନ୍ତି ।

"ଏହା କହୁ କହୁ ଶୋକାବେଗେ ରୁଦ୍ଧ
ହୋଇଗଲା କଣ୍ଠସ୍ୱର
କୋପେ ନେତ୍ରୁ ଅଗ୍ନି- କଣା ନିଃସରିଲା
ଥରିଲା ରଙ୍ଗ ଅଧର ।
ରତନ ହଜାଇ ଭୁଜଙ୍ଗୀ ଯେସନ
ଶ୍ୱାସୁ ଥାଇ ଘନ ଘନ
କୋପ ଧାରାପ୍ରାୟ ଦେବୀଙ୍କ ନାସାରୁ
ବହିଲା ଖର ପବନ ।"

ଧର୍ମରକ୍ଷା ନିମିତ୍ତ ଯେଉଁମାନେ ରାଜଦଣ୍ଡ ଧାରଣ କରିଛନ୍ତି ସେମାନେ ପୁଣି ଏପରି କଦାକାର କୁକାର୍ଯ୍ୟରେ ବ୍ରତୀ ହୋଇ ପାରନ୍ତି ? ଧର୍ମଦେବ ଏସବୁ କିପରି ସହ୍ୟ କରିଛନ୍ତି, ତାହା ପାର୍ବତୀ ବୁଝି ପାରି ନାହାଁନ୍ତି । ସ୍ୱାମୀ ହେଲେ ମଧ୍ୟ ଧର୍ମଦ୍ରୋହୀ ନରପିଶାଚ ଗଙ୍ଗେଶ୍ୱରଙ୍କୁ ସମୁଚିତ ଶାସ୍ତି ଦେବାପାଇଁ ପାର୍ବତୀ ଦୃଢ଼ପ୍ରତିଜ୍ଞ । କୌଶଲ୍ୟାର ଗୋଟିଏ ପଦ "କେମନ୍ତେ କହିବି, କାହା ଦରିଣ୍ଡିଲା, ଶିଶୁର ପଡ଼ା ଶରୀର" ଜନନୀ ପାର୍ବତୀଙ୍କ ହୃଦୟକୁ ସତତ ବିଦାରିତ

କରୁଛି । ଲମ୍ପଟ ନରରାକ୍ଷସ ଗଙ୍ଗେଶ୍ୱର ନଗ୍ନା ସୁକୁମାରୀ କୌଶଲ୍ୟାଙ୍କୁ କପଟ କଳବଳ କରାଇ ତଳେ ତଳେ ମାରିଛନ୍ତି, ତାହା ଶୁଣିବ ପାର୍ବତୀ ଗଭୀର ବେଦନା ପାଇଛନ୍ତି ଏବଂ ଏଭଳି ଘୃଣ୍ୟ ବ୍ୟକ୍ତିଙ୍କୁ ସ୍ୱାମୀରୂପେ ପାଇଥିବାରୁ ନିଜ ଭାଗ୍ୟକୁ ନିନ୍ଦା କରିଛନ୍ତି ।

"ମୋର ସୁତା ଭାଗ୍ୟେ ଏହି ପିତା, ଆହା
ମୋହର ଭାଗ୍ୟେ ଏ ପତି
କେଉଁ ଦୁଷ୍କୃତର ପ୍ରାୟଶ୍ଚିତ୍ତ ଲାଗି
ବାହିଥିଲେ ପ୍ରଜାପତି !"

ଏଭଳି ପତିର ମୁଖ ଦର୍ଶନ କରିବା ମହାପାପ । ପୁନଶ୍ଚ ରତ୍ନପୁର ଜେମା ଅନ୍ନପୂର୍ଣ୍ଣା, ଯାହାକୁ ପୁନ ଏକଜାତ ଭଲପାଇ ବସିଥିଲା, ତାର ସତୀତ୍ୱ ଅପହରଣ ପାଇଁ ଗଙ୍ଗେଶ୍ୱରଙ୍କର ଅପଚେଷ୍ଟା ବୃତ୍ତାନ୍ତ ଶୁଣି ପାର୍ବତୀ ଅସ୍ଥିର ହୋଇପଡ଼ିଛନ୍ତି । ସେ ଆଜି ରକ୍ତ-ମୁଖା । ସେ ବୀରାଙ୍ଗନା । ପୁରୁଷ ଜାତିର ନାରୀ ଜାତି ପ୍ରତି ଏହି ଅନ୍ୟାୟ ଓ ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ସେ କୃତ-ସଂକଳ୍ପ ।

ଯେଉଁ ସଂକଳ୍ପ ଉଷା ପୂରଣ କରି ପାରି ନ ଥିଲା, ସେ ସଂକଳ୍ପ ପୂର୍ଣ୍ଣ ହୋଇଛି ବୀରଙ୍ଗନା ପାର୍ବତୀଙ୍କ ହସ୍ତରେ । ପୁରୁଷ ଜାତି ପାଇଛି ତା ପାପର ସମୁଚିତ ପ୍ରାୟଶ୍ଚିତ୍ତ । ପାର୍ବତୀ ନାରୀ ଜାତିର ବୈଜୟନ୍ତୀ ଉଡ଼ାଇଛି, ପୁରୁଷର ଅତ୍ୟାଚାରରେ ଜର୍ଜରିତ ନାରୀସମାଜରେ ଆଶାର ବୀଜ ବପନ କରିଛି । ଆଜି କୌଶଲ୍ୟା, ଚନ୍ଦ୍ରଭାଗା ଓ ନନ୍ଦିକା ଯେପରି ଶତମୁଖରେ କହି ଉଠୁଛନ୍ତି—'ତୁ ନାରୀଜାତିର ତ୍ରାଣକର୍ତ୍ତ୍ରୀ ମା !'

ଚନ୍ଦ୍ରଭାଗା, କୌଶଲ୍ୟା, ଗୌରୀ ଏ ତିନିଙ୍କର ପରିଣତି ଏକ, କିନ୍ତୁ ଚରିତ୍ର ଏକା ନୁହେଁ । ତିନିହେଁ ଅକାଳମୃତ୍ୟୁ ବରଣ କରିଛନ୍ତି । ସେମାନଙ୍କର ଏହି ଅକାଳମୃତ୍ୟୁ ମୂଳରେ ରହିଛି ପୁରୁଷ । କିନ୍ତୁ ସେମାନଙ୍କର ଚରିତ୍ରଗତ ପ୍ରେମର ଆବେଗ ପରସ୍ପରଠାରୁ ପୃଥକ୍ ।

କୌଶଲ୍ୟା ଓ ଚନ୍ଦ୍ରଭାଗା ଉଭୟଙ୍କ ପ୍ରତି ପୁରୁଷର ଲୋଲୁପ ଦୃଷ୍ଟି ପଡ଼ିଛି ଏବଂ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ପୁରୁଷ ବଳାତ୍କାର କରିଛି । କୌଶଲ୍ୟା ଅନିଚ୍ଛା ସତ୍ତ୍ୱେ ପୁରୁଷର ହସ୍ତଗତ ହୋଇ ଶେଷକୁ କଳଙ୍କିନୀ ହୋଇଛି । କିନ୍ତୁ ଚନ୍ଦ୍ରଭାଗା ନିକଟରେ ପୁରୁଷ ସଂପୂର୍ଣ୍ଣ ପରାସ୍ତ । ଚନ୍ଦ୍ରଭାଗା ସମୁଦ୍ରଜଳରେ ଆତ୍ମବିଶ୍ୱାସ ଦେଇଛି ସତ, କିନ୍ତୁ ପୁରୁଷକୁ ତା'ର ଅଙ୍ଗସ୍ପର୍ଶ କରାଇ ଦେଇନି ।

ଚନ୍ଦ୍ରଭାଗା ଏକ ଅଭୂତନାରୀ । ସୂର୍ଯ୍ୟଙ୍କ ପରି ମହାନ୍ ପୁରୁଷର ସମସ୍ତ ଅନୁନୟ ବିନୟ ତା' ନିକଟରେ ବ୍ୟର୍ଥ ହୋଇଛି । ସୂର୍ଯ୍ୟ ନିଜର ମାନ ସମ୍ମାନ ଭୁଲି ତା'ପଛରେ ପାଗଳ ପରି ଧାଇଁଛନ୍ତି କେବଳ ଚନ୍ଦ୍ରଭାଗାର ମୁହଁରୁ ପଦେ ମିଠା କଥା ଶୁଣିବାକୁ, ଟିକେ ହସ ଦେଖିବାକୁ ।

କିନ୍ତୁ ଚନ୍ଦ୍ରଭାଗାର ହୃଦୟ ପାଷାଣରୁ କଠିନ । ପର ପୁରୁଷକୁ ଚାହିଁବା ତା'ର ଧର୍ମ ନୁହେଁ । ଏହି ପୁରୁଷ ତ କୌଶଲ୍ୟାର ସର୍ବସ୍ୱ ନେଇ ଶେଷକୁ ତାକୁ କଳଙ୍କିନୀ କରି ନିର୍ମମ ଭାବରେ ହତ୍ୟା କରିଛି । ସେହି କୃତଘ୍ନ ପୁରୁଷର ଚାଟୁବାଣୀରେ ଚନ୍ଦ୍ରଭାଗା ଭୁଲିବାର ପାତ୍ରୀ ନୁହେଁ । ନିଜର ଏହି ମରଣଶରୀରକୁ ପଛେ ସାଗର ଜଳରେ ମିଶାଇ ସବୁଦିନ ପାଇଁ ଲୀନ ହୋଇଯିବ, କିନ୍ତୁ ପୁରୁଷ ହାତରେ ଧରା ଦେବନି ।

ସାଗରବକ୍ଷକୁ ଚନ୍ଦ୍ରଭାଗା ଲମ୍ଫପ୍ରଦାନ କରି ସୂର୍ଯ୍ୟଙ୍କର ମଉଗଙ୍କକୁ ଚୂର୍ଣ୍ଣ କରିଛି । ତାର ମର ଶରୀର ନୀଳ ଜଳରାଶିରେ ମିଶି ଲୀନ ହୋଇଗଲା—

"ମିଶିଯାଏ ଯଥା ପ୍ରଭାତି ତାରା ରବିକରଣେ,
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ ।
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।"

କୌଶଲ୍ୟା ରାଜନନ୍ଦିନୀ ସତ, କିନ୍ତୁ ସବୁଠୁ ହତଭାଗିନୀ । ଉତ୍କଳ ସମ୍ରାଟ ଗଙ୍ଗେଶ୍ୱରଙ୍କ କନ୍ୟା । କ'ଣ ବା ତା'ର ଅଭାବ ? ପିତା ଗଙ୍ଗେଶ୍ୱର ପୁଣି ତା'କୁ ପ୍ରାଣାଧିକ ଭଲପା'ନ୍ତି । ଜୀବନର ପ୍ରଥମ ପାଦରେ କୌଶଲ୍ୟା ଅତ୍ୟନ୍ତ ଭାଗ୍ୟବତୀ ପରି ଜଣାପଡ଼ିଛି । ରୂପ ଗୁଣ ସବୁଥିରେ ସେ ଅସମାନ୍ୟା । ସବୁଆଡ଼େ ତା'ର ପ୍ରଶଂସା । ଗଙ୍ଗେଶ୍ୱର ଯୁଦ୍ଧଯାତ୍ରାବେଳେ ବି ରାଜଜେମାକୁ ସାଙ୍ଗରେ ନେବାକୁ ଭୁଲି ନାହାଁନ୍ତି । ପିତୃସେବାରେ କୌଶଲ୍ୟା ଆନନ୍ଦ ପାଏ ।

କିନ୍ତୁ ପାପିଷ୍ଠ ଗଙ୍ଗେଶ୍ୱର କନ୍ୟାର ସରଳତାର ସୁଯୋଗ ନେଇ ବଳାତ୍କାରରେ ତା'ର ସତୀତ୍ୱ ଅପହରଣ କରିଛନ୍ତି । ତା'ର ଗର୍ଭଲକ୍ଷଣ ପ୍ରକାଶ ପାଇବାରୁ ତାକୁ ବ୍ୟଭିଚାରିଣୀ ରୂପେ ଚିହ୍ନ କରି କାରାରୁଦ୍ଧ କରିଛନ୍ତି ଏବଂ ଶେଷରେ ସଦ୍ୟଜାତ ଶିଶୁ ସହ ଶୁଷ୍କ କୂପରେ ନିକ୍ଷେପ କରିଛନ୍ତି । କ୍ଷୁଧାରେ କଳବଳ ହୋଇ ଶେଷକୁ ମୃତ ଶିଶୁର ପଚାମାଂସ ଭକ୍ଷଣ କରିବାକୁ ସେ ବାଧ୍ୟ ହୋଇଛି । ତା'ପରେ ତା'ର ପ୍ରାଣପକ୍ଷୀ ଉଡ଼ିଯାଇଛି ।

କୌଶଲ୍ୟାର ଏକମାତ୍ର ଦୋଷ ତା'ର ସରଳ ବିଶ୍ୱାସ । କେଉଁ ଝିଅ ବାପକୁ ଅବିଶ୍ୱାସ କରେ ? ଏହି ସରଳ ବିଶ୍ୱାସର ସୁଯୋଗ

ନେଇ ପିତା ଗଙ୍ଗେଶ୍ୱର ଯେଉଁ ଅଶ୍ରୁତପୂର୍ବ କଦାକାର କର୍ମ କରିଛନ୍ତି, ତାହା ଶୁଣିଲେ ଲୋମ ଟାଙ୍କୁରି ଉଠେ। କବି ଯଥାର୍ଥରେ କହିଛନ୍ତି—

'ଦେଖିବାର ଆଉ ଚେତଣିକି, ଏହା କି
ଶୁଣିଥିଲୁ କର୍ଣ୍ଣେ କେବେ ?'

ତଥାପି ଗଙ୍ଗେଶ୍ୱର ଧାର୍ମିକ, ନ୍ୟାୟବାନ୍ ଏବଂ ସଚ୍ଚରିତ୍ର। ସୌଭାଗ୍ୟରାଶି ତାଙ୍କ ଉପରେ ଅଜାଡ଼ି ହୋଇପଡ଼େ। ଆଉ କୌଶଲ୍ୟା ହୁଏ ବ୍ୟଭିଚାରିଣୀ ଓ କଳଙ୍କିନୀ।

ସମାଜର ବିଚାର ଭିନ୍ନ। ସମାଜରେ ଦୁର୍ବଳର ସ୍ଥାନ ନାହିଁ। ବଳଶାଳୀ ହିଁ ସବୁ ସୁଯୋଗ ଲଭ କରେ। ଯେ ଦୁର୍ବଳ ସେ କୌଶଲ୍ୟା ପରି ଲାଞ୍ଛିତ ହୋଇ ଅକାଳମୃତ୍ୟୁ ବରଣ କରେ।

"ଧିକ ସେ ସଂସାର, ପ୍ରବଳର ଯହିଁ
ସବୁ କଥାରେ ସୁଯୋଗ
ଦୁର୍ବଳର ଯହିଁ ଦାରୁଣ କଷଣ
ମରବେ ଲାଞ୍ଛନାଭୋଗ।"

କୌଶଲ୍ୟା ଦୁର୍ବଳା ଓ ହତଭାଗିନୀ। ତା'ର ଏପରି ଶୋଚନୀୟ ମୃତ୍ୟୁ ହେବାବେଳେ ଆହା କହିବାକୁ କେହି ନାହିଁ।

କିଶୋରୀ ଗୌରୀ କିଶୋର କେଦାରକୁ ତା'ର ହୃଦମନ୍ଦିରରେ ଦେବତା ରୂପେ ପୂଜା କରିଛି। ଗୌରୀ ବ୍ୟତୀତ କେଦାର ଆଉ କିଛି ଜାଣିନି। ଉଭୟେ ପରସ୍ପରର ପ୍ରେମରେ କଣା। କବିଙ୍କ ଭାଷାରେ—"ବାଲ୍ୟତ କାଳରୁ ଦୁହେଁ ଦୁହିଁଙ୍କର ହୃଦୟ ମୂଳରେ କଣା।" ସମାଜ ସେମାନଙ୍କ ଶାସ୍ତ୍ରୀୟ ମିଳନରେ ବାଧା ଦେଇଛି। ବନ୍ୟାଜଳକୁ ସାମାନ୍ୟ ମାଟିବନ୍ଧ ଯେପରି ଅଟକାଇ ରଖିପାରେ

ନାହିଁ, କେଦାର-ଗୌରୀର ପ୍ରେମକଳକୁ ସମାଜ ଅଟକାଇ ରଖି-ପାରିଲା ନାହିଁ । ଅନ୍ଧକାର ରାତିରେ ଗୌରୀ ବାହାରି ପଡ଼ିଲା କେଦାରଙ୍କୁ ଅରଣ୍ୟ ମଧ୍ୟରେ ଭେଟିବାକୁ । ସଙ୍କେତ ସ୍ଥାନରେ ପହଞ୍ଚି ହଠାତ୍ ବ୍ୟାଘ୍ରର ସମ୍ମୁଖୀନ ହୋଇ ଗୌରୀ ପଳାୟନ କରିଛି । କିନ୍ତୁ ଛୁଟି ଯାଇଥିବା ଓଢ଼ଣାକୁ ବ୍ୟାଘ୍ର ଚିରି ପକାଇଛି ।

କେଦାର ଯଥାସ୍ଥାନରେ ପହଞ୍ଚି ରକ୍ତାକ୍ତ ଓଢ଼ଣା ଦେଖି ଗୌରୀର ମୃତ୍ୟୁ ହୋଇଯାଇଥିବାର ଆଶଙ୍କା କରିଛି । ଏହି ଆଶଙ୍କା ଫଳରେ କେଦାରର ଆତ୍ମହତ୍ୟା ।

ଗୌରୀ ଫେରିଆସି ଦେଖିବାକୁ ପାଇଛି କେଦାରର ଶବ । ଆଉ ଏ କଳଙ୍କ ଜୀବନ ଗୌରୀ ରଖନ୍ତା କାହିଁକି ? ଜୀବନସାରା ତିଳେ ତିଳେ ବିଚ୍ଛେଦଜ୍ୱାଳାରେ ମରିବା ଅପେକ୍ଷା ଏକାଥରେ ମରିଯିବା ଉଚିତ ନୁହେଁ କି ?

ଗୌରୀ ଆତ୍ମହତ୍ୟା କରିଛି । କବି ଗାଇ ଉଠିଛନ୍ତି—

"ଧନ୍ୟ ସେ ପ୍ରୀତିକି ମରଣ ଖ୍ୟାତିକି
ପ୍ରୀତି ସେ ପାରଇ ଜଣି ।"

Love knows no law. Love is Cupid. ଏଠାରେ ଏହାହିଁ ପ୍ରମାଣିତ ହୋଇଛି ।

ଗୌରୀ ଆଜ ମରି ମରିନାହିଁ । ସେ ଅମର । ପ୍ରେମର ଯେଉଁ ଉଜ୍ଜ୍ୱଳ ପରାକାଷ୍ଠା ସେ ଦେଖାଇଛି, ତାହା ଅଭୂତପୂର୍ବ ।

# ଦୁଇଟି ନାରୀ

ଦୁଇଟି ନାରୀ । ଉଭୟଙ୍କ ଚରିତ୍ରରେ ଆକାଶ ପାତାଳ ପ୍ରଭେଦ; କିନ୍ତୁ ଉଭୟଙ୍କ ପରିଣତି ଏକା । ଉଭୟ ହତଭାଗିନୀ । ଉଭୟଙ୍କର ଜୀବନ ଏତେ ଦୁଃସହ ଯେ ଉଭୟ ସ୍ୱେଚ୍ଛାକୃତ ମରଣ ବରଣ କରିଛନ୍ତି । ଫୁଟି ଉଠୁଥିବା ଦୁଇଟି କଳୀ ଅକାଳେ ମଉଳି ଝଡ଼ିପଡ଼ିଛି । ଉଭୟଙ୍କ ମରଣ ସ୍ୱେଚ୍ଛାକୃତ ହେଲେହେଁ ଏଥିପାଇଁ ଭୃଙ୍ଗ ରୂପୀ ପୁରୁଷ ଯେ ଦାୟୀ, ଏଥିରେ ସନ୍ଦେହ ନାହିଁ ।

ସବୁଠୁ ବଡ଼ କଥା ଯେ, ଗୋଟିଏ କଳୀ ଭୃଙ୍ଗକୁ ଆମନ୍ତ୍ରଣ କରି ମରିବା ବେଳେ ଅନ୍ୟଟି ପ୍ରତ୍ୟାଖ୍ୟାନ କରିବା ଫଳରେ ଅକାଳରେ ଝରିବାକୁ ବାଧ୍ୟ ହୋଇଛି ।

ଜଣେ ପୁରୁଷ ପାଦତଳେ ତାହାର ଯୌବନ ସମର୍ପଣ କରିବାକୁ ବ୍ୟାକୁଳ ହୋଇ ଧାଇଁ ଯାଇଛି । ସେ ପୁରୁଷର ପାଦ ତଳେ ସ୍ୱେଚ୍ଛାକୃତ ଭାବେ ଆତ୍ମସମର୍ପଣ କରି ବିହ୍ୱଳିତ ଚିତ୍ତରେ ଗାଇ ଉଠିଛି—

"ନନ୍ଦିକା ଉଦ୍ୟାନେ ନରେନ୍ଦ୍ର ନନ୍ଦିନୀ
ତୁମ୍ଭ ପଦେ ଆଜ ପ୍ରେମ-ଭିଖାରିଣୀ ।"

× × × ×

"ତୁମ୍ଭ ପଦେ ବିକି ଦେଇଛି ପରାଣ
ଏକମାତ୍ର ତୁମ୍ଭ ପ୍ରେମ ମୋର ଧ୍ୟାନ ।"

କିନ୍ତୁ ଅନ୍ୟ ଜଣଙ୍କ ଭିନ୍ନ ଧାତୁରେ ଗଢ଼ା । ପୁରୁଷର ଗନ୍ଧ ପଡ଼ିଲେ ତା'ର ନାହିଁ ତର । ଅତୁଳ ସୌନ୍ଦର୍ଯ୍ୟର ଅଧିକାରିଣୀ ହୋଇ ମଧ୍ୟ ସେ ପ୍ରେମଶୀଳା ନୁହେଁ । ପ୍ରେମପ୍ରସଙ୍ଗ ତାକୁ ବିଷପରି ଲାଗିଥାଏ ।

"ବିଷପ୍ରାୟେ ପ୍ରେମପ୍ରସଙ୍ଗେ ସଦା ଅରୁଚି ତାର
ପୁରୁଷ କଥାକୁ ଡରେ ସେ କରେ ଦୂରୁଁ ଜୁହାର ।"

ଏହିପରି ପରସ୍ପର ସ୍ୱତନ୍ତ୍ର ପୃଥକ୍ ଧାତୁରେ ଗଢ଼ା ଦୁଇଟି କୁମାରୀ । ଜଣକ ନାମ 'ନନ୍ଦିକା', ଅନ୍ୟ ଜଣେ 'ଚନ୍ଦ୍ରଭାଗା' । ଦୁହିଁଙ୍କ ମଧ୍ୟରେ କୌଣସି ପ୍ରକାର ଚରିତ୍ରଗତ ସାମ୍ୟ ନାହିଁ । ଦୁହିଁଙ୍କ ଚରିତ୍ର ପରସ୍ପରବିରୋଧୀ । ଜଣେ ପୁରୁଷପ୍ରେମରେ ପାଗଳିନୀ ତ ଅନ୍ୟ ଜଣେ ପୁରୁଷଜାତିକୁ ଘୃଣାଚକ୍ଷୁରେ ଦେଖିଥାଏ । ପୁନଶ୍ଚ ଜଣକ ପ୍ରେମକୁ ପୁରୁଷ ନିଷ୍ଠୁର ଭାବରେ ପ୍ରତ୍ୟାଖ୍ୟାନ କରିଥିବା ବେଳେ, ଅନ୍ୟ ଜଣଙ୍କ ପାଇଁ ପୁରୁଷ ପାଗଳ ହୋଇଯାଇଛି ।

ରାଜନନ୍ଦିନୀ ନନ୍ଦିକେଶ୍ୱରୀର ପ୍ରେମଭିକ୍ଷା ନିଷ୍ଫଳ ହୋଇଛି; ନିଷ୍ଠୁର ପୁରୁଷ ଗୈରଗଙ୍ଗ ନିର୍ଦ୍ଦୟ ଭାବରେ ତାକୁ ପାଦରେ ଠେଲି ଦେଇଛନ୍ତି । ଗୈରଗଙ୍ଗଙ୍କର ନିଷ୍ଠୁର ବାଣୀ ରାଜନନ୍ଦିନୀର କୋମଳ ହୃଦୟକୁ ବିଦୀର୍ଣ୍ଣ କରିଛି । ଯଥା—

"ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ;
ତିନି ମହାପାପ ଏକ କରଣୀରେ
ଅଦ୍ଭୁତ ସାଧନା ତୋର ସରଣୀରେ
କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟେ ତୁ ପୁଣି ଅବଳା ।"

ସ୍ବୈରଗଙ୍କ ଶକ୍ତ ତଥା ଆତ୍ମମଣକାରୀ । ତଥାପି ପ୍ରେମବନ୍ଧନା ନନ୍ଦକା ପିତାଙ୍କର ଦେବାଦତ୍ତ ମଣି ଘେନ ସ୍ବୈରଗଙ୍କ ଠାରେ ପ୍ରେମଭିକ୍ଷା କରିଥିଲା । ତାହାର ଯଥାର୍ଥ ପ୍ରତିପୁରସ୍କାର ପାଇଛି ।

ଅନ୍ୟ ପାଖରେ ଚନ୍ଦ୍ରଭାଗାଠାରେ କାମୁକ ପୁରୁଷ କେତେ କାକୁତି ମିନତି ସହକାରେ ପ୍ରେମଭିକ୍ଷା କରିଛି । ନିଜକୁ ଚରଣକିଙ୍କର ଓ ସେବକ ରୂପେ ଅଭିହିତ କରି କାମାନ୍ଧ ପୁରୁଷ ଅତ୍ୟନ୍ତ ଆକୁଳିତ ହୋଇ ଚନ୍ଦ୍ରଭାଗାଠାରେ ପ୍ରେମ ନିବେଦନ ଜଣାଇ ଗାଇଛି—

"କାହିଁ ପଳାଉଛୁ ସୁନ୍ଦରୀ ହୋଇ ଏତେ କାତର,
ଚରଣକିଙ୍କର ଜନକୁ କିମ୍ପା ଏତେ ତୋ ଡର ।
କିଣା କିଙ୍କରକୁ ଏ ଶଙ୍କା କିମ୍ପା କରୁ ନବୀନା,

× × ×

ରଖ ଏ ଜୀବନ ସେବକପଦେ କରି ସୁନ୍ଦରୀ,
ତୋହୋ ଦୟା ବିନା ଗଲାଣି ନିଷ୍ଠେ ମରି ସୁନ୍ଦରୀ ।"

ପୁରୁଷ ସ୍ବୈରଗଙ୍କ ନିକଟରେ ରାଜକୁମାରୀ ନନ୍ଦକେଶ୍ୱରୀର ପ୍ରେମ-ଆବେଦନ ଯିନା ବୃଥା ହୋଇଥିଲା, ଏଠାରେ କୁମାରୀ ଚନ୍ଦ୍ରଭାଗା ନିକଟରେ ପୁରୁଷ ସୂର୍ଯ୍ୟଙ୍କର ପ୍ରେମଭିକ୍ଷା ନିଷ୍ଫଳ ହୋଇଛି । ପୁରୁଷଜାତିର ସବୁ ଗର୍ବ ଅହଙ୍କାରକୁ ଚନ୍ଦ୍ରଭାଗା ଚୂର୍ଣ୍ଣ କରିଛି । ସୂର୍ଯ୍ୟଙ୍କର ସମସ୍ତ ଆବେଦନ ବୃଥା ହୋଇଛି ।

"ବୃଥା ହେଲା ଏତେ ମିନତି ଏତେ ଗୂଢ଼ ବଚନ,
ପଳାଇଲା ଋଷିକୁମାରୀ ବେଗେ ହୋଇ ଉଛନ୍ନ ।"

ଯେଉଁ ପୁରୁଷଜାତିର ରାକ୍ଷସହୃଦୟ ନାୟିକା ପରି ପ୍ରେମଶୀଳା ନାରୀର ପ୍ରେମତରୁରେ କୁଠାରାଘାତ କରିଛି, ସେହି ପୁରୁଷର ଗୃହ-ବାଣୀରେ ଚନ୍ଦ୍ରଭାଗା ଭୁଲିଯିବାର ପାତ୍ରୀ ନୁହେଁ । ସୂର୍ଯ୍ୟ ନଗରର ସମସ୍ତ ବିଭବ ଓ ପ୍ରତିପତ୍ତି ବର୍ଣ୍ଣନ କରି ଚନ୍ଦ୍ରଭାଗାର ହୃଦୟ ଜୟ କରିବାକୁ ଶତଚେଷ୍ଟା କରି ମଧ୍ୟ ନିରାଶ ହୋଇଛନ୍ତି ।

କିନ୍ତୁ ବିଭିନ୍ନ ଚରିତ୍ରଗତ ବୈଷମ୍ୟ ଥିବା ଏହି ଦୁଇ ନାରୀ ଏକପ୍ରକାର ପରିଣତି ଭୋଗ କରିଛନ୍ତି । ଜଣେ ଅତ୍ୟଧିକ କାମୁକା ହୋଇ ଓ ଅନ୍ୟ ଜଣେ କାମବିମୁଖା ହୋଇ ମଧ୍ୟ ସମଦଶା ଭୋଗିଛନ୍ତି । ପ୍ରେମପାଗଳୀ ନାୟିକା ଚିତ୍ରରଥଙ୍କ ଦ୍ୱାରା ଉପେକ୍ଷିତ ଓ ତିରସ୍କୃତ ହୋଇ ଆତ୍ମହତ୍ୟା କରିବାକୁ ଶ୍ରେୟସ୍କର ମଣିଛି । ଶିବିକାର ଦ୍ୱାରଦେଶ ଖୋଲି ହେବାପରେ ନାୟିକାର ମୃତ ଶରୀରଟି ଦେଖିବାକୁ ମିଳିଛି । ଯଥା —

"ଉତ୍ସନେ ଶୋଇଛି ଦୁଃଖିନୀ ନାୟିକା,
ପର୍ଯ୍ୟୁଷିତ ପଦ୍ମପ୍ରାୟେ ତନୁ ଫିକା ।
ଥିଲି ଯେ ଶରୀର ଶୋଭାର ଉଦ୍ୟାନ,
ଏବେ ତାହା ଆହା ଶୋଭାର ଶ୍ମଶାନ ।"

ଅନ୍ୟ ପକ୍ଷରେ ପୁରୁଷଜାତିକୁ ଚିରଘୃଣା କରୁଥିବା ଅବଳା ଚନ୍ଦ୍ରଭାଗା ପୁରୁଷର ଆକ୍ରମଣରୁ ନିଜକୁ ରକ୍ଷା କରିବାପାଇଁ ନୀଳ ସାଗରବକ୍ଷରେ ଝାସ ଦେଇଛି । ପୁରୁଷ ହାତରେ ଧରାଦେବା ଅପେକ୍ଷା ସାଗରର ନୀଳ ଜଳରାଶିରେ ନିଜକୁ ମିଶାଇ ଦେବାକୁ ସେ ଶ୍ରେୟସ୍କର ମନେ କରିଛି ।

"ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ···
ମିଶିଗଲି ତଥା ଅବଳା ସେହି ନୀଳ ତରଙ୍ଗେ ।"

ଏହି ଉଭୟ ନାୟିକାଙ୍କ ମାନସପିତା ହେଉଛନ୍ତି କବିବର ରାଧାନାଥ । ଏ ଉଭୟଙ୍କ ଆମଦାନୀ ସୁଦୂର ବିଦେଶୀ ସାହିତ୍ୟରୁ । ନନ୍ଦିକା ଉତ୍କଳର ଝିଅବାଳୀ ନୁହନ୍ତି କି ଚନ୍ଦ୍ରଭାଗା ସହିତ ଉତ୍କଳର ପୁଣ୍ୟପୀଠ ଚନ୍ଦ୍ରଭାଗାର କିଛି ସମ୍ପର୍କ ନାହିଁ । ଗ୍ରୀକ୍ ପୁରାଣର ଆପୋଲୋ ଡାଫ୍ନାର ପ୍ରେମକାହାଣୀ ରାଧାନାଥଙ୍କ କଲମରେ ଚନ୍ଦ୍ରଭାଗା କାବ୍ୟରେ ପରିଣତ ହୋଇଛି ।

ଚନ୍ଦ୍ରଭାଗା ଓ ନନ୍ଦିକାର ସୃଷ୍ଟି ଓଡ଼ିଆ ସାହିତ୍ୟରେ ନୂତନ ପରି ଜଣାପଡ଼ୁଥିଲେ ମଧ୍ୟ ଏଗୁଡ଼ିକ ମୌଳିକ ସୃଷ୍ଟି ନୁହେଁ ।

ସେଦିନ ଭୂଦେବ ବାବୁଙ୍କୁ ରାଧାନାଥ ସୁଭଦ୍ରା ପରିଣୟ ଆଦି କବିତା ଦେଖାଇବା ବେଳେ ଭୂଦେବ ବାବୁ ତାଙ୍କୁ ସ୍ପଷ୍ଟ କହିଥିଲେ ଯେ ପୁରାତନ ବିଷୟ ନେଇ ମୂଣ୍ଡ ନ ଖେଳାଇ ନୂତନ ସୃଷ୍ଟି କରିବା ଉଚିତ । ଯେତେ ଚେଷ୍ଟା କଲେ ବି ବ୍ୟାସଙ୍କ ସୁଭଦ୍ରା ସହ ତୁମ ସୁଭଦ୍ରା ସମକକ୍ଷ ହୋଇ ପାରିବ ନାହିଁ ।

ସେହି ଦିନଠାରୁ ରାଧାନାଥ ନୂତନ ସୃଷ୍ଟିରେ ଆଗ୍ରହ ପ୍ରକାଶ କରିଥିଲେ । 'ଉତ୍କଳ-କମଳା-ବିଳାସ-ଦୀର୍ଘିକା'ର ରମ୍ୟ ପ୍ରକୃତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଅଭିନବ ନାୟିଚରିତ୍ର ସୃଷ୍ଟି କରି ନୂତନତା ଓ ସ୍ୱତନ୍ତ୍ରତା ପାଇଁ ବ୍ୟଗ୍ର ହୋଇଥିଲେ ।

ତାଙ୍କର ଚନ୍ଦ୍ରଭାଗା, ନନ୍ଦିକା, ଉଷା, ପାର୍ବତୀ—କେହି ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, କମ୍ବା ରାଧିକା, ଚନ୍ଦ୍ରାବଳୀର ସମଧର୍ମିଣୀ ନୁହଁନ୍ତି । ନାୟୀ ପୁରୁଷର ବିଚ୍ଛେଦ ଓ ପୁନର୍ମିଳନ ବର୍ଣ୍ଣନା କରିବାକୁ ରାଧାନାଥ ପସନ୍ଦ କରି ନାହାନ୍ତି; ଗତାନୁଗତିକତାକୁ ଭାଙ୍ଗି ନାୟୀସୃଷ୍ଟିରେ ନୂତନତା ଆନୟନ କରିବାକୁ ବ୍ୟଗ୍ର ହୋଇଛନ୍ତି ।

ତାଙ୍କର ଅଧିକାଂଶ କାବ୍ୟ କରୁଣ ରସପ୍ରଧାନ ଏବଂ ଅଧିକାଂଶ ନାୟିକାଙ୍କ ଜୀବନ କରୁଣ ରସପୂର୍ଣ୍ଣ । ଚନ୍ଦ୍ରଭାଗା ଓ ନନ୍ଦିକା ପରି କରୁଣ ରସୋଦ୍ଭାସିତା ନାୟିକା ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କରେ ସୁଲଭ ନୁହେଁ । ସାଗରଜଳରେ ଚନ୍ଦ୍ରଭାଗାର ଆତ୍ମୋତ୍ସର୍ଗ ସମୟରେ ଏବଂ ନନ୍ଦିକାର ଅଶ୍ରୁଲିଖିତ ମୃତ୍ୟୁକାଳୀନ ଚିଠାଉ ପାଠ କଲାବେଳେ କେଉଁ ପାଠକର ଚକ୍ଷୁ ଅଶ୍ରୁସିକ୍ତ ନ ହେବ ?

ପ୍ରେମପାଇଁ ଲାବଣ୍ୟବତୀ କମ୍ବା କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କୁ ଜୀବନ ଦେବାକୁ ପଡ଼ିନାହିଁ । ସେମାନେ ଜୀବନକୁ ଉପଭୋଗ କରିଛନ୍ତି । ପ୍ରେମ ସେମାନଙ୍କ ନିକଟରେ ସହଜଲଭ୍ୟ ହୋଇ-ପଡ଼ିଛି । ସେମାନେ ପ୍ରେମପଥରେ ସ୍ୱଚ୍ଛନ୍ଦ ଭାବରେ ଯାତ୍ରା କରି ପାରିଛନ୍ତି । ପ୍ରେମପାଇଁ ସେମାନଙ୍କୁ ଅଶେଷ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିନାହିଁ । କିନ୍ତୁ ରାଧାନାଥଙ୍କ ନାରୀ ପ୍ରେମରାଜ୍ୟରେ ସ୍ୱଚ୍ଛନ୍ଦ ଭାବରେ ବିଚରଣ କରି ପାରିନାହିଁ । ପ୍ରେମପାଇଁ ତାକୁ ମହାନ୍ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । ରାଧାନାଥ ନାରୀର କରୁଣ ପରିଣତି ପାଠକକୁ ଅଭିଭୂତ କରିପକାଇଛି ।

'ଧନ୍ୟ ସେ ପ୍ରୀତିକି, ମରଣ ଭୀତିକି
ପ୍ରୀତି ସେ ପାରଇ ଜିଣି ।'

ଏହା ହିଁ ରାଧାନାଥ ନାରୀର ପ୍ରେମ ଆଦର୍ଶ । କିନ୍ତୁ ଚନ୍ଦ୍ରଭାଗା-ଠାରେ ଆଦର୍ଶ ନାହିଁ । ଚନ୍ଦ୍ରଭାଗା ଏକ ବ୍ୟତିକ୍ରମ । ସେ ଏକ ଅଦ୍ଭୁତ ନାରୀ । ନାରୀ ହୋଇ ପୁରୁଷଜାତି ପ୍ରତି ବିମୁଖ ହେବା ଓ ପ୍ରେମକୁ ବିଷପ୍ରାୟ ମଣିବା ଅସମ୍ଭବ କଥା । ଏଥିରେ ବାସ୍ତବତାର ଖୁବ୍ ଅଭାବ ରହିଛି । ଯେଉଁ କବିକଲମରୁ ନନ୍ଦିକା ପରି ପ୍ରେମବିହ୍ୱଳା ନାରୀର ସୃଷ୍ଟି ହୋଇପାରେ, ସେହି କବିମାନସ ଚନ୍ଦ୍ରଭାଗା ପରି

ପ୍ରେମବିମୁଖୀ ନାରୀର ସୃଷ୍ଟି କରିବା ଆଶ୍ଚର୍ଯ୍ୟ ନୁହେଁ କି ? ନୂତନ ସୃଷ୍ଟି କରିବାରେ ରାଧାନାଥଙ୍କର ପ୍ରବଳ ଆଗ୍ରହ ଫଳରେ ଏପରି ସୃଷ୍ଟି ସମ୍ଭବ ହୋଇପାରିଛି । ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ ମଧ୍ୟରେ ଯେପରି ଚରିତ୍ରଗତ ଗତାନୁଗତିକତା ଦେଖିବାକୁ ମିଳେ, ଚନ୍ଦ୍ରଭାଗା ଓ ନନ୍ଦିକା ଚରିତ୍ରରେ ସେପରି ଗତାନୁଗତିକତା ଦେଖିବାକୁ ମିଳେ ନାହିଁ ।

ଚନ୍ଦ୍ରଭାଗା ଓ ନନ୍ଦିକା ଏହି ଦୁଇ ନାରୀଙ୍କ ସୃଷ୍ଟି ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ମୂଳ ଭିତ୍ତିକୁ ଦୃଢ଼ କରିଛି, ଏହା କହିବା ବାହୁଲ୍ୟ ମାତ୍ର । ନନ୍ଦିକାର ହୀନ କାର୍ଯ୍ୟ ଫଳରେ ଉତ୍କଳର ରାଜବଂଶ କଳଙ୍କିତ ହୋଇଛି ସତ । ଚନ୍ଦ୍ରଭାଗାର ଆତ୍ମହତ୍ୟା ଫଳରେ କୋଣାର୍କ ମନ୍ଦିର ଧୂଳିସାତ୍ ହୋଇଯାଇଛି ବୋଲି ବର୍ଣ୍ଣନା କରିବା ଐତିହାସିକ ଦୃଷ୍ଟିକୋଣରୁ ଗୁରୁତର ଅପରାଧ । ତଥାପି ଏସବୁ ଦୋଷ ସତ୍ତ୍ୱେ ଏହି ଅଭିନବ ନାରୀସୃଷ୍ଟି ରାଧାନାଥଙ୍କ ପ୍ରତିଭାର ଯଥାର୍ଥ ନିଦର୍ଶନ ।

# କବିବର ରାଧାନାଥ

ରୀତିଯୁଗର ଶେଷ ବଳିଷ୍ଠ କବି ଯଦୁମଣିଙ୍କ ମୃତ୍ୟୁ ଓ ରାଧାନାଥଙ୍କ ସର୍ବପ୍ରଥମ ଖଣ୍ଡକାବ୍ୟ କେଦାରଗୌରୀର ପ୍ରକାଶକାଳ ମଧ୍ୟରେ ମାତ୍ର କୋଡ଼ିଏ ବର୍ଷର ବ୍ୟବଧାନ । ଏହି ମାତ୍ର କେତେ ବର୍ଷର ବ୍ୟବଧାନରେ ରାଧାନାଥ ଯେପରି ନବୀନ ଭାବ, ଭାଷା ଓ ଶୈଳୀର ପ୍ରୟୋଗ କରିଛନ୍ତି ତାହା ବିସ୍ମୟକର ଅଟେ ଏବଂ ସେଥିପାଇଁ ବୋଧହୁଏ ରାଧାନାଥ ଯୁଗସ୍ରଷ୍ଟାର ସମ୍ମାନ ଲାଭ କରିପାରିଛନ୍ତି । ଅବଶ୍ୟ ରାଧାନାଥ ଯେଉଁସବୁ ନୂତନତ୍ୱ ପ୍ରକାଶ କରିଥିବାର କୁହାଯାଏ, ସେସବୁ ତାଙ୍କ ପୂର୍ବରୁ ପ୍ରୟୋଗ ଓ ପରୀକ୍ଷିତ ହୋଇଥିଲା ।

କିନ୍ତୁ ସେ ସବୁରେ ସିଦ୍ଧି ହୁଏତ ନ ଥିଲା; ଯଦି ବା ଥିଲା ତାହା ସ୍ୱଳ୍ପ । ରାଧାନାଥ ଓଡ଼ିଆ ସାହିତ୍ୟରେ ଯେଉଁସବୁ ନୂତନତା ଆନୟନ କରିଥିବାର କୁହାଯାଏ, ସେଗୁଡ଼ିକ ହେଲା--

(୧) ଉପଧାମିଳନ

(୨) ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗ

(୩) ସରଳ ଓ ସହଜ ଭାଷାର ବ୍ୟବହାର

(୪) ପ୍ରକୃତିବର୍ଣ୍ଣନା

(୫) ବିଷୟବସ୍ତୁରେ ଗତାନୁଗତିକତା ପରିତ୍ୟାଗ ଓ ବିଭିନ୍ନତା ସୃଷ୍ଟି

(୬) ଜାତୀୟତା ଉଦ୍‌ବୋଧନ

କିନ୍ତୁ ବାସ୍ତବରେ ରାଧାନାଥ ଏସବୁ ନୂତନତାର ଆଦି-ପ୍ରବର୍ତ୍ତକ ନୁହଁନ୍ତି । ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଉପଧାମିଳନ କରାଯାଇ ପଦ୍ୟ ଲେଖାଯାଇଥିବାର ପୂର୍ବେ ଉଲ୍ଲେଖ କରାଯାଇଛି । ୧୮୬୯ ରେ ରଚିତ ଶ୍ୟାମପ୍ରସନ୍ନ ମୁଖୋପାଧ୍ୟାୟଙ୍କ 'ପଦ୍ୟପାଠ' ଏବଂ ୧୮୭୦ ରେ ରଚିତ ପ୍ରଭାକର ବିଦ୍ୟାରତ୍ନଙ୍କ 'ପଦ୍ୟମାଳା'ରେ ଉପାଧାମିଳନ କରାଯାଇଛି । ଗୋବିନ୍ଦ ରଥଙ୍କ ୧୮୮୫ ସାଲରେ ପ୍ରକାଶିତ 'କୁସୁମକଳିକା'ରେ ମଧ୍ୟ ଉପଧାମିଳନ ପ୍ରତି ଦୃଷ୍ଟି ଦିଆଯାଇଛି; ତେଣୁ ରାଧାନାଥ ଉପଧାମିଳନର ପ୍ରବର୍ତ୍ତକ କହିବା ସମୀଚୀନ ନୁହେଁ ।

ସେହିପରି ରାଧାନାଥ ଅମିତ୍ରାକ୍ଷର ଛନ୍ଦ ବ୍ୟବହାର କରିବା ପୂର୍ବରୁ ରାମଶଙ୍କର ତାଙ୍କର 'କାଞ୍ଚିକାବେରୀ' ନାଟକରେ ଏହି ଛନ୍ଦର ସଫଳ ପ୍ରୟୋଗ କରିଥିଲେ । କାଞ୍ଚିକାବେରୀ ରଚିତ ହେବା ପୂର୍ବରୁ ମଧ୍ୟ ରୁଦ୍ରନାରାୟଣ ପଟ୍ଟନାୟକ 'ଅଙ୍ଗଦବିଜୟ' କାବ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରିଥିବା କଥା ପୂର୍ବରୁ ଉଲ୍ଲେଖ କରାଯାଇଛି; ତେଣୁ ରାଧାନାଥ ଏ ଦିଗରେ ପୂର୍ବସୂରୀମାନଙ୍କ ପଥ କେବଳ ଅନୁସରଣ କରିଛନ୍ତି ମାତ୍ର ।

ରାଧାନାଥଙ୍କ କାବ୍ୟକବିତା ଅବଶ୍ୟ ରୀତିଯୁଗ କାବ୍ୟ ପରି କ୍ଲିଷ୍ଟ ନୁହେଁ । ଏହାର ଭାଷା ଅପେକ୍ଷାକୃତ ସରଳ ଓ ଅଳଙ୍କାର-ପ୍ରାଚୁର୍ଯ୍ୟରୁ ମୁକ୍ତ । ତଥାପି ରାଧାନାଥ ତତ୍ସମ ଓ ତଦ୍ଭବ ଶବ୍ଦର ଉପାସକ ଥିଲେ । ସେ ଫକୀରମୋହନଙ୍କ ପରି ଖାଣ୍ଟି ସାଧା ଓ ଓଡ଼ିଆରେ (ଯାହା କି ସକଳ ଶ୍ରେଣୀର ପାଠକ ବୁଝି ପାରିବେ) କାବ୍ୟ କବିତା ରଚନା କରିନାହାନ୍ତି । ତାଙ୍କର ମହାଯାତ୍ରାର ଭାଷାକୁ କଦାପି ସରଳ କୁହାଯାଇ ନ ପାରେ । ପୁନଶ୍ଚ ରାଧାନାଥ ଭଞ୍ଜଙ୍କ

ପ୍ରଭାବରୁ ପୂରାପୂରି ମୁକ୍ତ ହୋଇ ନ ପାରି କେତେକ ଅଳଙ୍କାର ପ୍ରୟୋଗ କରିଛନ୍ତି ।

ରାଧାନାଥଙ୍କ ହସ୍ତରେ ପ୍ରକୃତି ଶ୍ରୁତିରମ୍ୟ ଅଳଙ୍କାରରେ ବିଭୂଷିତ ହୋଇଥିଲେ ମଧ୍ୟ ତାଙ୍କ ପୂର୍ବରୁ ଯେ ଓଡ଼ିଆ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା ନ ଥିଲା; ତାହା କହିବା ମୂର୍ଖତାର ପରିଚାୟକ ମାତ୍ର । ସାରଳା ଦାସ, ଦେବଦୁର୍ଲଭ ଦାସ ଓ ଜଗନ୍ନାଥ ଦାସଙ୍କଠାରୁ ଆରମ୍ଭ କରି ଘନଭଞ୍ଜ ଓ ଭଞ୍ଜଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରକୃତି ବର୍ଣ୍ଣନା କରିଯାଇଛନ୍ତି ।

ରାଧାନାଥ ଯେଉଁ ଜାତୀୟତାର ଉଦ୍‌ବୋଧନ ଦେଇଛନ୍ତି, ତାହା ଏକାନ୍ତ ଅଭିନବ ନୁହେଁ । ରାଧାନାଥ ଯେତେବେଳେ ବଙ୍ଗଳା କବିତା ରଚନା କରୁଥିଲେ, ସେତେବେଳକୁ ଓଡ଼ିଶାରେ ଜାତୀୟ ଜାଗରଣ ଆସିଲାଣି ଏବଂ ଏହି ଜାତୀୟ ଜାଗରଣ ଫଳରେ ଓଡ଼ିଆ ଭାଷା ଓ ସାହିତ୍ୟ ବଙ୍ଗାଳୀମାନଙ୍କ ଚକ୍ରାନ୍ତରୁ କିପରି ରକ୍ଷା ପାଇପାରିଥିଲା, ତାହା କାହାକୁ ଅବିଦିତ ନାହିଁ ।

ଏ ସବୁ ଆଲୋଚନା କରି ବସିଲେ ରାଧାନାଥ ଓଡ଼ିଆ ସାହିତ୍ୟରେ କୌଣସି ନୂତନ ସରଣୀର ପ୍ରବର୍ତ୍ତକ ଥିବାପରି ଜଣା ପଡ଼ନ୍ତି ନାହିଁ । ତଥାପି ସେ ଯୁଗସ୍ରଷ୍ଟାର ସମ୍ମାନ ଲାଭ କରି ଆଧୁନିକ ଯୁଗର ପ୍ରବର୍ତ୍ତକ ହିସାବରେ ଅସପତ୍ନ ପ୍ରତିଷ୍ଠା ଲାଭ କରିଛନ୍ତି କିପରି ? ଏହା ଭାବିଲେ ଅବଶ୍ୟ ଆଶ୍ଚର୍ଯ୍ୟ ଲାଗେ ।

କିନ୍ତୁ ଏହା କେବଳ ସମ୍ଭବ ହୋଇଥିଲା ରାଧାନାଥଙ୍କ ସାହିତ୍ୟନିଷ୍ଠା, ପ୍ରତିଭା ଓ ଅସାଧାରଣ ପାଣ୍ଡିତ୍ୟ ଫଳରେ । ତାଙ୍କର ଯାଦୁକରୀ ଲେଖାମାରେ ପୁରାତନ ନୂତନ ରୂପେ ପ୍ରତିଭାତ ହୋଇଥିଲା ।

ତାଙ୍କ ପୂର୍ବରୁ ଉପଧାମିଳନ ଓ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରାଯାଇଥିଲା ସତ, କିନ୍ତୁ ତାଙ୍କପରି ଏତେ ନିଷ୍ଠା କାହାରି ନ ଥିଲା । ଅମିତ୍ରାକ୍ଷରରେ ରଚିତ ମହାଯାତ୍ରାର ପ୍ରଭା ନିକଟରେ ପୂର୍ବରୁ ଅମିତ୍ରାକ୍ଷର ଛନ୍ଦରେ ରଚିତ କତିପୟ ପୁସ୍ତକ ମଳିନ ହୋଇ ଲୋକଲୋଚନରୁ ଦୂରେଇ ଯାଇଛି । ସେହିପରି ଉପଧାମିଳନକୁ ସେ ଯେପରି ନିଷ୍ଠାର ସହ ପ୍ରୟୋଗ କଲେ, ସେଥିରୁ ସେ ଏହାର ପ୍ରବର୍ତ୍ତକ ରୂପେ ପରିଚିତ ହେବା ବିଚିତ୍ର ନ ଥିଲା । ଭଞ୍ଜଙ୍କ କ୍ଲିଷ୍ଟ ଓ ଦୁର୍ବୋଧ ଭାଷା ନିକଟରେ ରାଧାନାଥଙ୍କ ଭାଷା ପାଠକମାନଙ୍କୁ ସରଳ ଓ ସହଜ ମନେ ହେବା ଅସ୍ୱାଭାବିକ ନ ଥିଲା । ମହାନଦୀଠାରୁ ଚିଲିକାଠାରୁ ସାତକୋଶିଆ ଗଣ୍ଡ ପର୍ଯ୍ୟନ୍ତ ସମସ୍ତ ଉତ୍କଳୀୟ ପ୍ରାକୃତିକ ଶୋଭା ତାଙ୍କ ଲେଖାରେ ରୂପାୟିତ ହୋଇ ଅପୂର୍ବ ଶ୍ରୀ ଧାରଣ କଲା । ବିଦେଶୀ ସାହିତ୍ୟରୁ ଆମଦାନି ହେଲେ ମଧ୍ୟ ନୂତନ ନୂତନ ବିଷୟବସ୍ତୁ ପରିବେଷଣ କରି ସେ ପାଠକଙ୍କୁ ଝଲସାଇ ଦେଇଥିଲେ । ଏସବୁ ଦୃଷ୍ଟିରୁ ତାଙ୍କୁ ଯୁଗସ୍ରଷ୍ଟାର ସମ୍ମାନ ମିଳିବା ଅଯଥାର୍ଥ ନୁହେଁ ।

**କେଦାରଗୌରୀ**— ରାଧାନାଥଙ୍କ ପ୍ରଥମ ଖଣ୍ଡକାବ୍ୟ 'କେଦାରଗୌରୀ' ୧୮୮୬ ରେ ବାଲେଶ୍ୱରର ଦେଙ୍କ ପ୍ରେସରୁ ପ୍ରକାଶିତ ହୁଏ । ଏହା ପୂର୍ବରୁ ତାଙ୍କର କେତେକ ବଙ୍ଗଳା କବିତା ଏବଂ ଅନେକ ଓଡ଼ିଆ କବିତା ଓ ପ୍ରବନ୍ଧ ପ୍ରକାଶ ପାଇଥିଲା ।

କେଦାରଗୌରୀର ବିଷୟବସ୍ତୁ ବିଦେଶୀ ସାହିତ୍ୟରୁ ଆନୀତ । ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଥିଲେ । ପଡ଼ୋଶୀ ବଙ୍ଗୀୟ ସାହିତ୍ୟ ମଧ୍ୟ ତାଙ୍କୁ କମ୍ ପ୍ରଭାବିତ କରି ନ ଥିଲା । ବଙ୍ଗୀୟ ସାହିତ୍ୟକୁ ସେ ବିଶେଷ ଭାବରେ ଅନୁଧ୍ୟାନ କରିଥିଲେ । ତାଙ୍କର ନିଜସ୍ୱ ଅପେକ୍ଷା ଆମଦାନି ଅଧିକ ଥିଲା ।

ତଥାପି ସ୍ୱପ୍ରତିଭ ବଳରେ ସେ ବାହାରର ଆମଦାନୀକୁ ଅନେକାଂଶରେ ନିଜସ୍ୱ କରି ପାରିଥିଲେ । ଗ୍ରୀକ୍ ସାହିତ୍ୟରୁ ଆମଦାନି ଏହି ବିଷୟବସ୍ତୁକୁ ସେ ଓଡ଼ିଶାର ଐତିହାସିକ ବସ୍ତୁ ରୂପେ ପରିଣତ କରିପାରିଛନ୍ତି ଏବଂ ଓଡ଼ିଆ ଦେବପୀଠ ସହ ଖୁବ୍ ଦକ୍ଷତା ସହକାରେ ଯୋଡ଼ି ଦେଇଛନ୍ତି । ଏହା ତାଙ୍କ ଯାଦୁକରୀ ଲେଖନୀର କରାମତି । ଆଜି ବି ଭୁବନେଶ୍ୱରର ପଣ୍ଡା କେଦାରଗୌରୀ କାହାଣୀ ସହ ସଂଲଗ୍ନ ସ୍ଥାନଗୁଡ଼ିକ ଦର୍ଶକଙ୍କୁ ଦେଖାଇ ଦିଏ ।

ଏହା ଏକ ଶୁଦ୍ଧ ପ୍ରେମର କାହାଣୀ । ତେଣୁ ରାଧାନାଥଙ୍କ ଅନ୍ୟାନ୍ୟ କାବ୍ୟ ପରି ଏଥିରେ କୃତ୍ରିମ ପ୍ରେମ କିମ୍ବା ପାଶବିକ ପ୍ରେମର ବର୍ଣ୍ଣନା ନାହିଁ । ଏ ଦୃଷ୍ଟିରୁ କେଦାରଗୌରୀ ତାଙ୍କର ଏକ ସଫଳ ସୃଷ୍ଟି ।

ଯୁବକ କେଦାର ଓ ଯୁବତୀ ଗୌରୀକୁ ଯୌବନର ମଳୟ ଛୁଇଁଛି । ବସନ୍ତର ଆଗମନରେ ସେମାନଙ୍କର ମନ ଚଞ୍ଚଳ ହୋଇ ଉଠିଛି । ଉଭୟେ ପ୍ରେମରଜ୍ଜୁରେ ବାନ୍ଧି ହୋଇପଡ଼ିଛନ୍ତି । ପରସ୍ପରକୁ ଲାଭ କରିବା ପାଇଁ ଉଭୟଙ୍କ ମନ ବ୍ୟାକୁଳ ହୋଇପଡ଼ିଛି । କିନ୍ତୁ ଏ ସମାଜ ସେମାନଙ୍କ ପଥରେ ହୋଇଛି ପ୍ରଧାନ ପ୍ରତିବନ୍ଧକ । ପ୍ରେମ-ତରଙ୍ଗିଣୀର ପ୍ରବାହ ବାଧାପ୍ରାପ୍ତ ହୋଇଛି । ସେମାନଙ୍କ ପ୍ରେମକୁ ସମାଜ ସ୍ୱୀକୃତି ନ ଜଣାଇ ବାଧା ସୃଷ୍ଟି କରିଛି ।

ଫଳରେ ଉଭୟେ ସ୍ଥିର କରିଛନ୍ତି, ସମାଜର ବନ୍ଧନ ଏଡ଼ି ପ୍ରେମର ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ହେବାପାଇଁ —

"କେତେ ଦିନ ଅନ୍ତେ ବେନିଏ ଏମନ୍ତେ<br>
ଏ ମନ୍ତ୍ରଣା କଲେ ସାର<br>
ପ୍ରେମର ସନ୍ନ୍ୟାସୀ ସନ୍ନ୍ୟାସିନୀ ହୋଇ<br>
ଦୁହେଁ ଯିବେ ଦେଶପାର ।"

ଯଥା ସମୟରେ ଗୌରୀ ସଙ୍କେତ ସ୍ଥାନରେ ଉପଗତ ହୋଇଛି । କିନ୍ତୁ କେଦାର ବଦଳରେ ଆସିଛି ଭୀଷଣ ବ୍ୟାଘ୍ର । ପ୍ରାଣବିକଳରେ ଗୌରୀ ପଳାୟନ କରିବା ସମୟରେ ଅବଗୁଣ୍ଠନ ଖସିପଡ଼ିଛି । ବ୍ୟାଘ୍ର ସେହି ଅବଗୁଣ୍ଠନକୁ ଛିନ୍ନ ଭିନ୍ନ କରି ନିଜର ରାଗ ମେଣ୍ଟାଇ ଚାଲିଯାଇଛି ।

ତା'ପରେ ଆସିଛି କେଦାର । ରକ୍ତାକ୍ତ ଅବଗୁଣ୍ଠନ ତାହାର ସୁଖସ୍ୱପ୍ନ ଭାଙ୍ଗିଦେଇଛି । ସେ ପ୍ରିୟାର ମୃତ୍ୟୁ ହୋଇଥିବା ଭାବି ଦୁଃଖ ଓ ହତାଶରେ ମ୍ରିୟମାଣ ହୋଇପଡ଼ି ଆତ୍ମହତ୍ୟା କରିଛି ।

ତା'ପରେ ଗୌରୀ ସଙ୍କେତ ସ୍ଥାନକୁ ଫେରିଆସି ଦେଖିଛି ପ୍ରିୟତମର ପ୍ରାଣହୀନ ଶୀତଳ ଜଡ଼ପିଣ୍ଡ । ସେ ବା ଆଉ କାହିଁକି ଏ ଅଲୋଡ଼ା ଜୀବନ ଧରି ବଂଚନ୍ତା ? ପ୍ରାଣତ୍ୟାଗ ଦେଇ ପ୍ରିୟତମଙ୍କ ସହଯାତ୍ରିଣୀ ହୋଇଛି । ଯେଉଁ ମୃତ୍ୟୁ ବିଛିନ୍ନ କରିଥିଲା, ସେହି ମୃତ୍ୟୁ ହିଁ ମିଳନ କରାଇ ଦେଇଛି । ରାଧାନାଥ ଏଇଠି ମର୍ମଭେଦୀ ଭାଷାରେ ଗାଇ ଉଠିଛନ୍ତି—

"ଧନ୍ୟ ସେ ପ୍ରୀତିକି          ମରଣ ଭୀତିକି
ପ୍ରୀତି ସେ ପାରଇ ଜିଣି ।"

ଏହା ହିଁ କେଦାରଗୌରୀର କାବ୍ୟାଦର୍ଶ । ଏଥିରେ ଯେଉଁ ପ୍ରେମର ଅବତାରଣା କରାଯାଇଛି ତାହା ଶୁଦ୍ଧ, ପବିତ୍ର ଓ ଆଦର୍ଶ ସ୍ଥାନୀୟ । ଉପଧା ମିଳନ, ସରଳ ଓ ବୋଧଗମ୍ୟ ଭାଷା ପ୍ରୟୋଗ, ସରଳ ଛନ୍ଦର ବ୍ୟବହାର ଓ ଶୁଦ୍ଧପ୍ରେମର ବର୍ଣ୍ଣନା ଏହି ଖଣ୍ଡ-କାବ୍ୟର ବିଶେଷତ୍ୱ ।

**ଚନ୍ଦ୍ରଭାଗା**— ରାଧାନାଥ ରାୟଙ୍କ ଚନ୍ଦ୍ରଭାଗା ଖଣ୍ଡକାବ୍ୟ ତା ୪-୯-୮୭ ରେ ଦେ'ଙ୍କ ପ୍ରେସରୁ ପ୍ରକାଶ ପାଇଥିଲା । ସେତେ-

ବେଳେ ଏହାର ମୂଲ୍ୟ ମାତ୍ର ଦୁଇପଇସା ରଖାଯାଇଥିଲା । କବିବର ଏହାର ବିଷୟବସ୍ତୁକୁ ଗ୍ରୀକ୍ ପୁରାଣରୁ ସଂଗ୍ରହ କରିଥିବାର ଅନୁମାନ କରାଯାଏ । ଆପୋଲୋ ଓ ଡାଏନାଙ୍କ ପ୍ରଣୟବ୍ୟାପାରକୁ ଆଖି ଆଗରେ ରଖି ସେ ଚନ୍ଦ୍ରଭାଗା ରଚନା କରିଥିବା ପରି ଜଣାପଡ଼େ । ଏହା ରାମକେରୀ ରାଗରେ ରଚିତ । କବି ଏଠାରେ ଅନୁପ୍ରାସର ବହୁଳ ବ୍ୟବହାର କରିଛନ୍ତି । ଭାଷା ସରଳ ଓ ଚିତ୍ତାକର୍ଷକ ହୋଇଛି । କାବ୍ୟଶେଷରେ ଏକ ସୁନ୍ଦର ମାଳୋପମା ରହିଛି—

> "ମିଶିଯାଏ ଯଥା ପ୍ରଭାତତାରା ରବିକରଣେ,
> ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ ଆତ୍ମାଚରଣେ,
> ମିଶିଯାଏ ଯଥା ଚପଳା ନୀଳ ଜଳଦଅଙ୍ଗେ,
> ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।"

ସୂର୍ଯ୍ୟ "ଚନ୍ଦ୍ରଭାଗା" ପ୍ରତି ପ୍ରେମାସକ୍ତ ହୋଇପଡ଼ିଥିଲେ ହେଁ ଚନ୍ଦ୍ରଭାଗା ତାଙ୍କ ପ୍ରତି ଆସକ୍ତି ପ୍ରକାଶ କରିନାହାଁନ୍ତି । ସୂର୍ଯ୍ୟ ପ୍ରେମବିହ୍ୱଳ ହୋଇ ନିଜକୁ 'କଣାଜନ' ବୋଲି କହି ଚନ୍ଦ୍ରଭାଗା ପଛରେ ଯେତେ ଧାବମାନ ହେଲେ ବି ଚନ୍ଦ୍ରଭାଗା ତାଙ୍କ ପ୍ରତି ଦୃକ୍‌ପାତ କରିନାହାଁନ୍ତି, ବରଂ ଆତ୍ମରକ୍ଷା ପାଇଁ ଦ୍ରୁତବେଗରେ ପଳାୟନ କରିଛନ୍ତି । ଦେବଗଣଙ୍କର ନୀଳାଚଳରେ ଜଗନ୍ନାଥଙ୍କ ଦର୍ଶନବେଳେ ସୂର୍ଯ୍ୟ-କନ୍ଦର୍ପ କଳି ଓ ଅପମାନର ପ୍ରତିଶୋଧ ନେବାପାଇଁ ସୂର୍ଯ୍ୟଙ୍କ ପ୍ରତି କନ୍ଦର୍ପର ପୁଷ୍ପଶର ପ୍ରୟୋଗ ଆଦି ବିଷୟ କାବ୍ୟର ପ୍ରଥମ ଅଂଶରେ ବର୍ଣ୍ଣନା କରାଯାଇଛି । କନ୍ଦର୍ପର ପୁଷ୍ପଶର ପ୍ରୟୋଗଫଳରେ ସୂର୍ଯ୍ୟ ପ୍ରେମାସକ୍ତ ହୋଇପଡ଼ିଛନ୍ତି । ଅପର ପକ୍ଷରେ କନ୍ଦର୍ପ ଚନ୍ଦ୍ରଭାଗା ପ୍ରତି ଓଲଟାଶର ପ୍ରୟୋଗ କରିବା ଫଳରେ ସେ ପ୍ରେମ-ବିମୁଖୀ ହୋଇପଡ଼ିଛି । କିନ୍ତୁ ହିନ୍ଦୁଶାସ୍ତ୍ର

ପୁରାଣରେ କନ୍ଦର୍ପଙ୍କ ଉଲଚ୍ଛାଶର ପ୍ରୟୋଗର ଦୃଷ୍ଟାନ୍ତ କେଉଁଠାରେ ନାହିଁ । ସେ ଯାହା ହେଉ, ଶେଷରେ ଚନ୍ଦ୍ରଭାଗା ସୂର୍ଯ୍ୟଙ୍କ ହସ୍ତରେ ଧରାଦେବା ଅପେକ୍ଷା ସାଗରରେ ଝାସ ଦେବାକୁ ଶ୍ରେୟସ୍କର ମଣିଛି । ପରଶେଷରେ ସୂର୍ଯ୍ୟଙ୍କର ଏହି ପାପକର୍ମ ହେତୁ ସୁମନ୍ତ୍ୟ ଋଷିଙ୍କ ଅଭିଶାପ ଦ୍ୱାରା କବି କୋଣାର୍କ ମନ୍ଦିରକୁ ଧୂଳିସାତ୍ କରାଇଛନ୍ତି ।

ଏହି ବିଷୟବସ୍ତୁ କଦାପି ଇତିହାସ ସତ୍ୟ ସମ୍ବଳିତ ନୁହେଁ । ଅଭିଶାପ ଦ୍ୱାରା କୋଣାର୍କ ମନ୍ଦିରକୁ ଧୂଳିସାତ୍ କରାଇ ରାଧାନାଥ ବିଜ୍ଞତାର କାର୍ଯ୍ୟ କରିନାହାନ୍ତି । ସାହିତ୍ୟରେ ଅବଶ୍ୟ ଇତିହାସର ସତ୍ୟାସତ୍ୟ ଖୋଜିବା ବୃଥା । ତଥାପି ଦେଶର ପ୍ରସିଦ୍ଧ ସ୍ଥାନଗୁଡ଼ିକ ଏହି ବିଦେଶୀ ଆମଦାନି କଥାବସ୍ତୁକୁ ଯୋଡ଼ି ଐତିହାସିକତ୍ୱ ଆରୋପ କରିବାର ଚେଷ୍ଟା ଏକ ନିନ୍ଦନୀୟ କାର୍ଯ୍ୟ ।

ଏହା ସତ୍ତ୍ୱେ କାବ୍ୟିକ କଳା ଦୃଷ୍ଟିରୁ ଚନ୍ଦ୍ରଭାଗାର ସ୍ଥାନ ଉଚ୍ଚରେ । ଏହାର ଛନ୍ଦ, ଭାଷା, ଅଳଙ୍କାର ଓ ବର୍ଣ୍ଣନାରୀତି ହୃଦୟଗ୍ରାହୀ ଅଟେ; କିନ୍ତୁ ସ୍ଥାନେ ସ୍ଥାନେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଅତିମାତ୍ରାରେ ପଡ଼ିଥିବାର ଜଣାଯାଏ । ଚନ୍ଦ୍ରଭାଗାର

"ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ପରଶି
ଯେଣେ ଗଲେହେଁ ତେଣେ ଛଇଳା ଫୁଲ ଯାଏ ବରଷି ।"

ଏହି ପଦ ସହ ଟେନିସନ୍‌ଙ୍କ 'ମଡ୍' କାବ୍ୟର ନିମ୍ନୋକ୍ତ ପଦକୁ ମିଳାଇ ଦେଖନ୍ତୁ ।

"I know the way she went
Home with her maiden posy,
For her feet have touched the meadows
And left the daisies rosy."

**ନନ୍ଦିକେଶ୍ୱରୀ**—ରାଧାନାଥଙ୍କ 'ନନ୍ଦିକେଶ୍ୱରୀ' ଖଣ୍ଡକାବ୍ୟ ୧୮୮୮ରେ ରଚିତ । ଉତ୍କଳର ବୀରବାଳା ନନ୍ଦିକା ରାଧାନାଥଙ୍କ ହସ୍ତରେ ପ୍ରେମବିହ୍ୱଳା ହୋଇଉଠିଛି । ଉତ୍କଳନରେନ୍ଦ୍ରଙ୍କ ରାଜନନ୍ଦିନୀ ନନ୍ଦିକା ମାତୃଭୂମି ଆକ୍ରମଣକାରୀ ଶତ୍ରୁ ଚୋରଗଙ୍ଗଙ୍କ ଠାରେ ମନପ୍ରାଣ ବିକି ଦେଇଛି । ସେ ସାତିଶୟ ରୂପମୁଗ୍ଧ ହୋଇପଡ଼ି ନିଜକୁ ଆୟତ୍ତ କରିପାରି ନାହିଁ । ନିଶୀଥରେ ପିତାଙ୍କ ଦେବଦତ୍ତ ମଣି ଅପହରଣ କରି ଚୋରଗଙ୍ଗଙ୍କ ନିକଟରେ ପ୍ରେମଭିକ୍ଷା କରିଛି—

"ମଣି ନୁହଇ ଏ ପିତାଙ୍କ ଜୀବନ
ତୁମେ ଯେଣୁ ବିଶ୍ୱ-ବିଶ୍ୱାସଭଞ୍ଜନ ।
ନିଃଶଙ୍କେ ସମର୍ପି ଦେଲି ମୁଁ ସକଳ
ପ୍ରତିଦାନେ ପ୍ରେମ ମାଗୁଛି କେବଳ ।
ତୁମ୍ଭର ସନ୍ତୋଷ ସର୍ବୋପରେ ଗଣି
ପିତାଙ୍କ ଅଜ୍ଞାତେ ଆଣିଲି ଏ ମଣି ।
ତୁମ୍ଭ ପଦେ ବିକି ଦେଇଛି ପରାଣ
ଏକମାତ୍ର ତୁମ୍ଭ ପ୍ରେମ ମୋର ଧ୍ୟାନ ।"

ଏହି କେତୋଟି ପଦ ପଢ଼ିବାବେଳେ କେଉଁ ଓଡ଼ିଆର ମୁଖ ଲଜ୍ଜାରେ ଅବନତ ହୋଇ ନ ଯିବ ? ଉତ୍କଳ ରାଜନନ୍ଦିନୀର ଏ କି ହୀନ ଚରିତ୍ର ? ଶତ୍ରୁ ପଦତଳେ ନିର୍ଲଜ୍ଜ ଭାବରେ ପ୍ରେମଭିକ୍ଷା ! ପୁନଶ୍ଚ ପିତୃଙ୍କ ଦେବଦତ୍ତ ମଣି ଅପହରଣ କରି ଶତ୍ରୁ ପାଦରେ ଉପହାର ! ଆଜି ଓଡ଼ିଶାର ଦୁର୍ଭାଗ୍ୟ ପଦାର୍ପଣ ପାଇଥାଏ । କିନ୍ତୁ ଅତୀତର ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ବୀରତ୍ୱ କାହାଣୀ କ'ଣ ରାଧାନାଥଙ୍କୁ ଅମାଲୁମ ଥିଲା ? ବୀରରକ୍ତରେ ଗଢ଼ା ଓଡ଼ିଆ ରାଜବାଳାର ଚରିତ୍ରରେ ଏପରି କଳଙ୍କ ବୋଳି ରାଧାନାଥ କେତେ ଦୂର ଠିକ୍ କରିଛନ୍ତି, ତାହା

ତ୍ରୁଟି ହୁଏନା । ଏହା ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ ଗାଇଛନ୍ତି—

"ଘର ଗୁଡ଼ କମ୍ପା ଯିବେ ସେ ଝାରବାଳା ନନ୍ଦକା
ସହକାର-ଦ୍ରୁମ-ଗନ୍ଧକେ ତେଜ କ୍ଷୀଣ ଚନ୍ଦ୍ରକା ?"

ନନ୍ଦକାର ଏହି ପ୍ରେମଭିକ୍ଷା ଚୋରଗଙ୍ଗଙ୍କ ଠାରେ ବ୍ୟର୍ଥ ହୋଇଛି । ସେ ପ୍ରେମିକା ସଂଗ୍ରହ ପାଇଁ ଉତ୍କଳକୁ ଆସି ନ ଥିଲେ । ଉତ୍କଳର ରାଜଛତ୍ର ଅଧିକାର ଥିଲା ତାଙ୍କର କାମନା । ପୁନଶ୍ଚ ଝାରପରି ସମ୍ମୁଖଲଢ଼େଇରେ ସେ ଉତ୍କଳ ଅଧିକାର କରିବାକୁ ଆସିଥିଲେ । ତେଣୁ ଦେବଦତ୍ତ ମଣି ଅପହରଣକୁ ସେ ପସନ୍ଦ କରିନାହାଁନ୍ତି । ଚୋରଗଙ୍ଗଙ୍କ ନିଷ୍ଠୁର ହୃଦୟ ନନ୍ଦକାର ପ୍ରେମଭିକ୍ଷାକୁ ପ୍ରତ୍ୟାଖ୍ୟାନ କରିଛି । ସେତିକି ନୁହେଁ, ନନ୍ଦକାର ଏହି କାର୍ଯ୍ୟପାଇଁ ଚୋରଗଙ୍ଗ ତାକୁ ତୀବ୍ର ଭାବରେ ଭର୍ତ୍ସନା କରିଛନ୍ତି ।

"ପବିତ୍ର କେଶରୀ ବଂଶେ ଜନ୍ମ ହୋଇ
ଦେଶଦ୍ରୋହୀ ରାଜଦ୍ରୋହୀ ପିତୃଦ୍ରୋହୀ ।
ତିନ ମହାପାପ ଏକ କରଣିରେ
ଅଦ୍ଭୁତ ସାଧନା ତୋର ଧରଣୀରେ ।
କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟେ, ତୁ ପୁଣି ଅବଳା ।"

ନନ୍ଦକାର ଆଶା-ବୃକ୍ଷ ଚୋରଗଙ୍ଗଙ୍କ କୁଠାରାଘାତରେ ଉପୁଡ଼ି ପଡ଼ିଛି । ତାର ପ୍ରେମ-ତରଙ୍ଗିଣୀ ଶୁଷ୍କ ମରୁଭୂମିରେ ପରିଣତ ହୋଇଛି । ଜୀବନ ତୀବ୍ର ଯନ୍ତ୍ରଣାଦାୟକ ହୋଇଉଠିଛି । ସେ ଆଜି ନିଃସହାୟା ଓ ଆଶ୍ରୟହୀନା । ସେ କଳଙ୍କିନୀ, ପୁନଶ୍ଚ ଦେଶଦ୍ରୋହିଣୀ, ପିତୃଦ୍ରୋହିଣୀ ଓ ରାଜଦ୍ରୋହିଣୀ । କେବଳ ମୃତ୍ୟୁହିଁ ତାକୁ ଆଶ୍ରୟ ଦେଇପାରେ ।

"ନତମୁଖୀ ହୋଇ ମହୀକୁ ମାରବେ
ମାଗୁଥିଲେ କି ସେ ଆଶ୍ରୟ ଗରଭେ !"

ଏହି ପଦଟି ପଢ଼ିବା ବେଳେ ନନ୍ଦିକା ପ୍ରତି ପାଠକର ସମବେଦନା ଜାତ ହୁଏ । ତାର ଦୁର୍ଦ୍ଦଶା ଦେଖି ମନରେ ଅନୁକମ୍ପା ଆସେ । ରାଧାନାଥଙ୍କ ଅନ୍ୟ ଖଣ୍ଡକାବ୍ୟ ଯଥା ଚନ୍ଦ୍ରଭାଗା ଓ କେଦାରଗୌରୀ ପରି ଏହା ମଧ୍ୟ ଦୁଃଖାନ୍ତମୂଳକ ।

୧୮୮୯ ରୁ ୧୮୯୨ ମଧ୍ୟରେ କବିବର ରାଧାନାଥଙ୍କ ତିନୋଟି ଖଣ୍ଡକାବ୍ୟ ପ୍ରକାଶିତ ହୋଇଥିଲା । ଯଥା—ଉଷା, ପାର୍ବତୀ ଓ ଚିଲିକା ।

**ଉଷା**—ରାଧାନାଥ ଗ୍ରୀକ୍‌ପୁରାଣ ଓଭିଡ୍‌ର ନାୟିକା ଆଟଲାଣ୍ଟା ଚରିତ୍ରରୁ "ଉଷା"କୁ ଆମଦାନ କରିଥିବା ଜଣାପଡ଼େ । ଭାଗବତର ଦଶମସ୍କନ୍ଧରେ ବାଣାସୁର କନ୍ୟା ଉଷା ବିଷୟ ଉଲ୍ଲେଖ ଅଛି । ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ସହ ଉଷାର ପରିଣୟ ହୋଇଥିଲା । ଶିଶୁଶଙ୍କର ଦାସ ମଧ୍ୟ "ଉଷାଭିଳାଷ" ନାମକ ଏକ ମନୋରମ କାବ୍ୟ ରଚନା କରିଛନ୍ତି । କିନ୍ତୁ ରାଧାନାଥ ସେସବୁ ବିଷୟବସ୍ତୁକୁ ପରିତ୍ୟାଗ କରି କେବଳ ଉଷା ନାମଟିକୁ ଗ୍ରହଣ କରିଛନ୍ତି ଏବଂ ଆଟାଲାଣ୍ଟା ଚରିତ୍ରକୁ ଉଷା ଦେହରେ ଯୋଡିଦେଇଛନ୍ତି । ବାଲେଶ୍ବରର ନୂରୁପୁର ଗ୍ରାମକୁ ନୂରୁନଗରୀ ରୂପେ ଚିତ୍ର କରିଛନ୍ତି । ଉଷା ଏହି ନୂରୁନଗରୀର ରାଜବାଳା । ସେ ଭୀଷଣ ପ୍ରତିଜ୍ଞା କରିଛି—

"ବିଷମ ପ୍ରତିଜ୍ଞା ମନେ ମନାସିଲା ସୁନ୍ଦରୀ ସାର
ଗତିବେଗେ ତାକୁ ଯେ ଜିଣିବ, ହେବ ପତି ସେ ତାର ।"

ଶତ ଶତ ରାଜକୁମାର ଦୂର ଦେଶବିଦେଶରୁ ଆସି ରାଜକୁମାରୀ ସହ ଦୌଡ଼ ପ୍ରତିଯୋଗିତାରେ ଭାଗ ନେଇଛନ୍ତି । କିନ୍ତୁ ସମସ୍ତେ

ପରାଜିତ ହୋଇ ଅକାଳମୃତ୍ୟୁ ବରଣ କରିଛନ୍ତି । "ଶତ ନୃପସୂନୁ" ସ୍ୱୟମ୍ବରକୁ ଆସି ଶ୍ମଶାନ ଭୂମିରେ ଚିରବିଶ୍ରାମ ନେଇଛନ୍ତି । ଶେଷରେ ଆସିଛନ୍ତି ଜୟନ୍ତ । ଜୟନ୍ତର ସୌମ୍ୟ ସୁଠାମ ମୂର୍ତ୍ତି ଉଷାର ମନୋରାଜ୍ୟକୁ ଜୟ କରିଛି । ପ୍ରଥମ ଦର୍ଶନରେ ଉଷା ଜୟନ୍ତ ପ୍ରତି ଆକୃଷ୍ଟ ହୋଇପଡ଼ିଛି ଏବଂ ଜୟନ୍ତକୁ ପତିରୂପେ ଗ୍ରହଣ କରିବାକୁ ଆପାତତଃ ସ୍ଥିର କରିଛି ।

ଦୌଡ଼ ସମୟରେ ଆଟଲାଣ୍ଟାର ନାୟକ ଗତିପଥରେ ସ୍ୱର୍ଣ୍ଣ ଆତ ଫିଙ୍ଗିବା ପରି ଜୟନ୍ତ ସ୍ୱର୍ଣ୍ଣପଦ୍ମ ନିକ୍ଷେପ କରି ଉଷାକୁ ଆକୃଷ୍ଟ କରାଇ ଗତିହ୍ରାସ କରାଇବା ପାଇଁ ଚେଷ୍ଟା କରିଛି । ସର୍ବଶେଷରେ ଦୌଡ଼ ପ୍ରତିଯୋଗିତାରେ ଅପରାଜିତା ଉଷା ପରାଜିତା ହୋଇଛି । କିନ୍ତୁ ଏ ପରାଜୟ ଉଷାକୁ ବିଜୟ ଅପେକ୍ଷା ଅଧିକ ଆନନ୍ଦ ଦେଇଛି ।

ଏଠାରେ ଏକ ପ୍ରଶ୍ନ ଉଠୁଛି, ଯେଉଁ ରାଜକୁମାରୀର ନିଷ୍ଠୁର ହୃଦୟ ଶତ ଶତ ନୃପସୂନୁଙ୍କ ମୃତ୍ୟୁରେ ତରଳି ନାହିଁ, ସେ ପ୍ରଥମ ଦର୍ଶନରେ ଜୟନ୍ତ ପ୍ରତି ଏପରି ଆକୃଷ୍ଟ ହୋଇପଡ଼ିଛି କିପରି ଏବଂ ଏତେ ଆନୁଗତ୍ୟ ଓ ଭକ୍ତି ପ୍ରକାଶ କରି ଜୟନ୍ତର ମୃତ୍ୟୁରେ ନିଜର ମରଣପଥ ବାଛି ନେବାକୁ ସ୍ଥିର କରିଛି କିପରି ?

ଏଥିରେ ବାସ୍ତବତା ଖୁବ୍ କମ୍ ଅଛି ? ପୁନଶ୍ଚ ପରିଶେଷରେ ଜୟନ୍ତ ଓ ଉଷା ପରସ୍ପରକୁ ସ୍ପର୍ଶ କରିବା ମାତ୍ରେ ଯେପରି ଇହଲୀଳା ତ୍ୟାଗ କରିଛନ୍ତି, ତାହା ନିହାତି ଅସଂଗତ ଓ ଅବାସ୍ତବ ହୋଇପଡ଼ିଛି । ରାଧାନାଥ ନିଜ ପରିବାରରେ ଘଟିଥିବା ଗୋଟିଏ ଘଟଣାକୁ ଏଠାରେ ଯୋଡ଼ି ଦେଇଥିବାର "ରାଧାନାଥ ଜୀବନୀ"ରୁ ଜଣାପଡ଼େ । ମନ ୧୮୮ ସାଲରେ ରାଧାନାଥଙ୍କ ପିତୃବ୍ୟଙ୍କ

ଏକମାତ୍ର ପୁତ୍ର ବିବାହରାତ୍ରିରେ ଠିକ୍ ବିବାହ ପରେ ହଠାତ୍ ହଇଜା ରୋଗରେ ପ୍ରାଣ ହରାଇଥିଲେ । ପରିବାର ମଧ୍ୟରେ ଏହି ମର୍ମନ୍ତୁଦ ଘଟଣା କବିଙ୍କ କାବ୍ୟର ପରିକଳ୍ପନାକୁ ପ୍ରଭାବାନ୍ୱିତ କରିଥିବା ବିଷୟ ଅନୁମାନ କରାଯାଇପାରେ । ('ରାଧାନାଥ ଜୀବନୀ', ପୃଷ୍ଠା ୭୭୭)

**ପାର୍ବତୀ**—ରାଧାନାଥଙ୍କ ପାର୍ବତୀ ଏକ ଅପୂର୍ଣ୍ଣ ଖଣ୍ଡକାବ୍ୟ । ଏଥିରେ ପାଶବିକ ପ୍ରେମର ବର୍ଣ୍ଣନା ଦେଖିବାକୁ ମିଳେ । କାବ୍ୟଟିର ବିଷୟବସ୍ତୁ ଗ୍ରୀକ୍‌କବି ହୋମରଙ୍କ 'ଇଲିୟଡ଼୍' କାବ୍ୟ ଓ ଏସକାଇଲସ୍‌ଙ୍କ 'ଆଗ୍‌ମେନନ୍' ନାଟକରୁ ଅଣାଯାଇଥିବାର ଜଣାଯାଏ । ସେକ୍‌ସପିୟରଙ୍କ "ହାମଲେଟ୍' ନାଟକର ଛାୟା ମଧ୍ୟ ଏଥିରେ ପଡ଼ିଅଛି ।

ରାଧାନାଥ ଜଣେ ସିଦ୍ଧହସ୍ତ ପରିବେଷକ ଥିଲେ । ସେ ବିଷୟବସ୍ତୁ ବାହାରୁ ଆମଦାନୀ କରୁଥିଲେ ସତ, କିନ୍ତୁ ତାହାକୁ ଓଡ଼ିଶାର ପାଣିପାଗରେ ରାନ୍ଧି ଏପରି ଭାବରେ ପରିବେଷଣ କରୁଥିଲେ ଯେ ତାହା ସମସ୍ତଙ୍କୁ ମୁଗ୍ଧ କରୁଥିଲା ।

"ଇଲିୟଡ଼୍" କାବ୍ୟର ନାୟକ ରାଜା "ଆଗମେନନ୍" ଟ୍ରୟ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ରାଣୀ "କ୍ଲାଇଟେମେନ୍ ଷ୍ଟ୍ରା" "ଏଜିସ୍‌ଥାସ୍"ଙ୍କୁ ଉପପତି ରୂପେ ଗ୍ରହଣ କରିଥିଲେ ଏବଂ ରାଜା ପ୍ରତ୍ୟାବର୍ତ୍ତନ କରିବାପରେ ତାଙ୍କୁ ଏହି ଉପପତି ଦ୍ୱାରା ନିହତ କରିଥିଲେ । ହୋମରଙ୍କ 'ଇଲିୟଡ଼୍' କାବ୍ୟର ଏହି ବିଷୟବସ୍ତୁକୁ ନେଇ ଏସକାଇଲସ୍ "ଆଗମେନନ୍" ନାଟକ ରଚନା କଲେ ।

ଏହି ନାଟକର ବିଷୟବସ୍ତୁ ଅନୁସାରେ ରାଜା ଆଗମେନନ୍ ସୈନ୍ୟ ସାମନ୍ତମାନଙ୍କ ସହ ଜାହାଜରେ ଟ୍ରୟ ଅଭିମୁଖେ ଯାତ୍ରା

କରୁଥିବା ବେଳେ ସମୁଦ୍ରରେ ଭୀଷଣ ଝଡ଼ ବାତ୍ୟାର ସମ୍ମୁଖୀନ ହୋଇ ଜୀବନର ଆଶା ଛାଡ଼ି ବସିଲେ । ଏହି ସମୟରେ ପୁରୋହିତଙ୍କ ପରାମର୍ଶ ଅନୁସାରେ ସଙ୍ଗରେ ଯାଉଥିବା ରାଜଜେମାଙ୍କୁ ବଳି ଦେବାରୁ ପ୍ରାକୃତିକ ବିପଦରୁ ରକ୍ଷା ପାଇଥିଲେ । ରାଣୀ କ୍ଲାଇଟେମେନଷ୍ଟ୍ରା ଏ ସମ୍ବାଦ ପାଇ ଅତିଶୟ ଦୁଃଖାଭିଭୂତ ହୋଇପଡ଼ିଲେ ଏବଂ ରାଜାଙ୍କ ପ୍ରତି ତାଙ୍କର ଘୃଣା ଜାତ ହେଲା । ତେଣୁ ସେ ଉପପତି ଗ୍ରହଣ କରି ରାଜାଙ୍କ ପ୍ରତ୍ୟାବର୍ତ୍ତନ ପରେ ତାଙ୍କୁ ଉପପତି ଦ୍ଵାରା ନିହତ କଲେ । "ହାମଲେଟ" ନାଟକରେ ମଧ୍ୟ ତଦ୍ରୂପ ରାଣୀ ଗାର୍ଟରୁଡ଼୍ ଦେବର ପ୍ରେମରେ ପଡ଼ି ସ୍ଵାମୀଙ୍କୁ ହତ୍ୟା କରିଛି । ଏହି ଦୁଇ ମହାକବିଙ୍କ ରଚିତ ଦୁଇ ନାଟକର ବିଷୟ-ବସ୍ତୁକୁ ରାଧାନାଥ ବୋଧହୁଏ ନିଜ ସମ୍ମୁଖରେ ରଖି ପାର୍ବତୀ କାବ୍ୟ ରଚନା କରିବାକୁ ଅଗ୍ରସର ହୋଇଛନ୍ତି ।

ପୁନଶ୍ଚ ଗ୍ରୀକ୍ କବି ସୋଫେକ୍ଲସ୍‌ଙ୍କ "ଇଡ଼ିପସ୍" କାବ୍ୟ ପ୍ରତି ରାଧାନାଥଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିବାର ଜଣାଯାଏ । "ଇଡ଼ିପସ୍" କାବ୍ୟରେ ମାତା-ପୁତ୍ର ମଧ୍ୟରେ ଅବୈଧ ପାପ-ପ୍ରଣୟର ବର୍ଣ୍ଣନା ଦିଆଯାଇଛି । ମାତା-ପୁତ୍ରର ଅବୈଧ ପ୍ରେମକୁ ବଦଳାଇ ରାଧାନାଥ ପିତାକନ୍ୟାର ଅବୈଧ ପ୍ରେମରୂପେ ଚିତ୍ର କରିଥିବାର ମନେହୁଏ ।

ବିଦେଶରୁ ଆମଦାନି ହୋଇଥିବା ଏହି ବିଷୟବସ୍ତୁରେ ଓଡ଼ିଶାର ଛାପ ମାରିବା ପାଇଁ ପରେ କେତେକ ଓଡ଼ିଆ କିମ୍ବଦନ୍ତୀର ଆଶ୍ରୟ ନିଆଯାଇଛି । ଇତିହାସପ୍ରସିଦ୍ଧ ଧଉଳି ପାହାଡ଼ ନିକଟରେ କୌଶଲ୍ୟାଗଙ୍ଗ ନାମକ ଏକ ବିରାଟ ପୁଷ୍କରିଣୀ ଅଛି । ରାଜା ଗଙ୍ଗେଶ୍ଵର ନିଜକୃତ ପାପର ପ୍ରାୟଶ୍ଚିତ୍ତ ପାଇଁ ଏହି ପୁଷ୍କରିଣୀଟି

ଖୋଳାଇଥିବାର ଜଣାଯାଏ । ଶ୍ରୀ ଜଗଦ୍‌ବନ୍ଧୁ ସିଂହ ତାଙ୍କ ପ୍ରାଚୀନ ଉତ୍କଳରେ ମାଦଳାପାଞ୍ଜିରୁ ଉଦ୍ଧାର କରି ନିମ୍ନୋକ୍ତ ପ୍ରକାରେ ଲେଖିଛନ୍ତି—"କାମାର୍ଣ୍ଣବ ବା ଗଙ୍ଗେଶ୍ୱର ଦେବ କୌଶଲ୍ୟାଗଙ୍ଗ ପୁଷ୍କରଣୀ ଖୋଳାଇଥିଲେ । ଏ ପୁଷ୍କରଣୀ ପିପିଲି ନିକଟରେ । ରାଣୀମାନେ ଏହାଙ୍କ ମୁଣ୍ଡ ଛେଚି ମାରି ପକାଇଥିଲେ ।"

ଏ ସମ୍ବନ୍ଧରେ ଥିବା ସ୍ଥାନୀୟ ଜନଶ୍ରୁତିକୁ "ରାଧାନାଥ-ଜୀବନୀ"ରେ କୁଳମଣି ଦାସ ଯେପରି ଲେଖିଛନ୍ତି ତାହା ନିମ୍ନରେ ଦିଆଗଲା । "ଜଣେ ରଜାର ଗୋଟିଏ ଭାରି ସୁନ୍ଦରୀ ଝିଅ ଥିଲା । ସେ ରଜାଟି ପାପୀ । ଦିନେ ସେ ପଣ୍ଡିତମାନଙ୍କୁ ସଭାରେ ପଚାରିଲେ, ଯେ ଯେଉଁଗଛ ଲଗାଏ ସେ ସେହି ଗଛର ଫଳ ଖାଏ କି ନାହିଁ ? ପରେ ସେ ପାପୀ ରାଜା ନିଜ ଝିଅଠାରେ ପାପ ଆଚରଣ କଲେ । ଝିଅର ପାପଗର୍ଭ ହେଲା । ପାପର ପ୍ରାୟଶ୍ଚିତ୍ତ କରିବା ପାଇଁ ସେ ଝିଅକାଖରେ ଗୋଟିଏ ପାଣିମାଠିଆ ଦେଇ ତା ତଳେ ଗୋଟିଏ ଛୋଟ କଣା କରିଦେଲେ । ମାଠିଆରୁ ପାଣି ଶେଷ ହେବାପର୍ଯ୍ୟନ୍ତ କଣାବାଟେ ପାଣି ଯେଉଁଠାରୁ ଯେଉଁସ୍ଥାନ ଯାଏ ପଡ଼ିଲା, ତାକୁ ଦୀର୍ଘ ଓ ପ୍ରସ୍ଥ କରି ଏହି ପୋଖରୀ ସେ ରଜା ଖୋଳାଇଲା । ତୀରପାଖରେ ତୀରବେଦୀ, ବ୍ରାହ୍ମଣଶାସନ ବସାଇଲା । ପଣ୍ଡିତମାନଙ୍କୁ ଏ ପୋଖରୀ ପ୍ରତିଷ୍ଠା କରାଇବା ପାଇଁ କହିଲା; ମାତ୍ର ଏଥିରେ ସେମାନେ ରାଜି ହେଲେ ନାହିଁ । ଏହି ସମୟରେ ସେ ରାଜା ମରିଗଲା ଓ ଏ ପୋଖରୀ ଅଣପ୍ରତିଷ୍ଠ ହୋଇ ରହିଲା । (ରାଧାନାଥ ଜୀବନୀ, ପୃଷ୍ଠା ୭୯୮)

ପୂର୍ବକଥିତ ଗ୍ରୀକ୍ ଓ ଇଂରାଜୀ ନାଟକ ଓ ଉପରୋକ୍ତ କିମ୍ବଦନ୍ତୀକୁ ଆଖିଆଗରେ ରଖି ରାଧାନାଥ ପାର୍ବତୀ କାବ୍ୟ ରଚନା କରିଥିବା ପରି ପ୍ରତୀୟମାନ ହୁଏ । ଏହି କାବ୍ୟ ରଚନାକାଳରେ

ତାଙ୍କ ଜ୍ୟେଷ୍ଠ ପୁତ୍ର ଶଶିଭୂଷଣ ଗୁରୁତର ଭାବରେ ପୀଡ଼ିତ ହେବାରୁ ସେ ଏହାକୁ ପୂର୍ଣ୍ଣାଙ୍ଗ କରିପାରି ନାହାନ୍ତି । ସେ ଯାହା ହେଉ ଏ କାବ୍ୟର ବିଷୟବସ୍ତୁ ବାଛିବାରେ ଯେ ରାଧାନାଥ ଠିକ୍ କରି ନାହାନ୍ତି, ଏଥିରେ ଦ୍ୱିଧାମତ ନାହିଁ । ସାହିତ୍ୟ କେବଳ ମାନସିକ ତୃପ୍ତି ପାଇଁ ଲେଖାଯାଏ ନାହିଁ । ସମାଜ ଉପରେ ଏହାର କି ପ୍ରଭାବ ପଡ଼ିବ, ତାହା ମଧ୍ୟ ବିଚାରକୁ ନଆସିବାର କଥା । ସାହିତ୍ୟ ଓ ସମାଜ ଓତପ୍ରୋତ ଭାବରେ ଜଡ଼ିତ । ସମାଜକୁ ସଂସ୍କୃତ କରିବା ସାହିତ୍ୟର ଧର୍ମ । ଏଣୁ ସାହିତ୍ୟରେ ଏପରି ଦୂଷଣୀୟ ବିଷୟ-ବସ୍ତୁର ବର୍ଣ୍ଣନା ଯଥାର୍ଥ ହୋଇନାହିଁ ବୋଲି କୁହାଯାଇ ପାରେ ।

ତଥାପି ଏ କାବ୍ୟରେ ଓଡ଼ିଶାର ବିଭିନ୍ନ ପର୍ବତ ଓ ପ୍ରାକୃତିକ ଦୃଶ୍ୟର ଯେମନ୍ତ ବର୍ଣ୍ଣନା କରାଯାଇଛି, ସେଥିପାଇଁ ରାଧାନାଥ ଧନ୍ୟ-ବାଦାର୍ହ । ଓଡ଼ିଶାର ପ୍ରାକୃତିକ ଶୋଭା ରାଧାନାଥଙ୍କ ଲେଖନୀରେ ଅତୀବ ରମଣୀୟ ଭାବରେ ବର୍ଣ୍ଣିତ ହୋଇପାରିଛି । ତେଣୁ ତାଙ୍କର ସବୁ ଦୋଷ ଗୁଣ ସତ୍ତ୍ୱେ ଏବଂ ବିଷୟ ନିର୍ବାଚନରେ ତ୍ରୁଟିସତ୍ତ୍ୱେ ସେ ପ୍ରକୃତିକବି ହିସାବରେ ଅମର ରହିବେ ।

**ଚିଲିକା** — ରାଧାନାଥଙ୍କ ମିତ୍ରାକ୍ଷର ରଚନାଗୁଡ଼ିକ ମଧ୍ୟରେ ଚିଲିକା ସର୍ବୋତ୍କୃଷ୍ଟ । ଓଡ଼ିଶାର ସର୍ବବୃହତ୍ତମ ହ୍ରଦ ଚିଲିକାର ଅତୁଳନୀୟ ଶୋଭାରାଶି ପ୍ରକୃତିକବି ରାଧାନାଥଙ୍କ କାବ୍ୟିକ ହୃଦୟକୁ ଏପରି ଭାବରେ ମୁଗ୍ଧ କରିଥିଲା ଯେ ସେ ଏହି ହ୍ରଦ ଉପରେ ଏକ ସରସ ମନୋରମ କାବ୍ୟ ରଚନା କରିବାକୁ ସକ୍ଷମ ହୋଇପାରିଲେ ।

ଚିଲିକା ଏକ ଖଣ୍ଡକାବ୍ୟ । କେତେକ ଏହାକୁ କାବ୍ୟ ଆଖ୍ୟା ନ ଦେଇ ଗୀତିଧର୍ମୀର ଦୀର୍ଘ କବିତା ବୋଲି କହନ୍ତି । କାରଣ

ଏଠାରେ କେହି ନାୟିକା ନାହାନ୍ତି । ଅନ୍ୟ ପକ୍ଷରେ ଯେଉଁମାନେ ଏହାକୁ ଖଣ୍ଡକାବ୍ୟ ବୋଲି କହନ୍ତି ସେମାନେ ଚିଲିକାକୁ ନାୟିକା ବୋଲି ବିବେଚନା କରନ୍ତି । ଚିଲିକା କାବ୍ୟକୁ ବିଶ୍ଳେଷଣ କଲେ ଆମ୍ଭେମାନେ ଯେଉଁ ଶିଳ୍ପକ୍ରମ ଦେଖିବାକୁ ପାଉ, ତାହା ଅଧ୍ୟାପକ ତାରିଣୀଚରଣ ଦାସ ତାଙ୍କର 'ନୂତନ ସମୀକ୍ଷା' ପୁସ୍ତକରେ ଏହିପରି ଦର୍ଶାଇଛନ୍ତି ।

(କ) ଚିଲିକାର ବାହ୍ୟ ଶୋଭା ବର୍ଣ୍ଣନା ।

(ଖ) ଅଖିଳ ଭାରତୀୟ ଚିତ୍ର ସଙ୍ଗେ ତୁଳନା ଓ ଚିଲିକାର ଉତ୍କର୍ଷ ପ୍ରତିପାଦନ ।

(ଗ) ବିଭିନ୍ନ ଉତ୍କଳୀୟ ପ୍ରାକୃତିକ ଦୃଶ୍ୟ ସହିତ ଚିଲିକାର ସମ୍ବନ୍ଧ ବର୍ଣ୍ଣନା ।

(ଘ) ଉତ୍କଳର ଭିନ୍ନ ଭିନ୍ନ ସାଂସ୍କୃତିକ ପୀଠ ସହିତ ଚିଲିକାର ସମ୍ପର୍କ ନିର୍ଣ୍ଣୟ ।

(ଙ) ଉତ୍କଳୀୟ ଐତିହାସିକ କିମ୍ବଦନ୍ତୀରେ ଚିଲିକାର ସ୍ଥାନ ଓ ସ୍ୱରୂପ ।

(ଚ) କବିଙ୍କ ଆତ୍ମଗ୍ଲାନତା—ଦାର୍ଶନିକ ବ୍ୟାଖ୍ୟା ଏବଂ ଆଶାବାଦୀ କଳ୍ପନା ।

'ଉତ୍କଳପ୍ରଭା'ରେ ଚିଲିକା ପ୍ରଥମେ ପ୍ରକାଶିତ ହୋଇଥିବାର ଜଣାଯାଏ । ମୟୂରଭଞ୍ଜ ମହାରାଜା ଚିଲିକା ପାଇଁ ରାଧାନାଥଙ୍କୁ ଏକଶତ ଟଙ୍କା ପୁରସ୍କାର ଦେଇଥିଲେ । କିନ୍ତୁ ରାଧାନାଥଙ୍କ ଚିଲିକା ସହ ଗୋବିନ୍ଦ ମହାପାତ୍ରଙ୍କ 'ହିମାଚଳ' ମଧ୍ୟ ଏକଶତ ଟଙ୍କା ପୁରସ୍କାର ପାଇଥିବାରୁ ରାଧାନାଥ ଦୁଃଖିତ ହୋଇ ହୀରା ସଙ୍ଗେ କାଚ ତୁଳନା କରାଯାଉଛି ବୋଲି କ୍ଷୋଭ ପ୍ରକାଶ କରିଥିବାର

ଜଣାଯାଏ । ସେଥିପାଇଁ ରାଧାନାଥ 'ମହାଯାତ୍ରା' ପାଇଁ ପୁରସ୍କାର ଗ୍ରହଣ କରି ନ ଥିଲେ । ରାଧାନାଥଙ୍କ ଲେଖନୀରୁ ଏହା ଏକ ସାର୍ଥକ ଓ ଅମୂଲ୍ୟ ସୃଷ୍ଟି ଏଥିରେ ସନ୍ଦେହ ନାହିଁ । ଏଥିରେ ହୁଏତ କେତେକ ତ୍ରୁଟି ରହିଛି । ଇଂରେଜକବି ସ୍କଟ୍‌ଙ୍କ 'ଲେଡ଼ି ଅଫ ଦ ଲେକ୍' ଓ ବାଇରନଙ୍କ 'ଚାଇଲଡ଼୍ ହାରଲଡ଼୍'ର ପ୍ରଭାବ ପଡ଼ିଛି ଓ କାଳିଦାସଙ୍କ 'ଋତୁସଂହାର'ର ଛାୟା ପଡ଼ିଥିବାର ଜଣାଯାଏ । କିନ୍ତୁ ଏସବୁ ଆଦାନ ପ୍ରଦାନ ମଧ୍ୟରେ ବି ଚିଲିକା ଏକ ଅମୂଲ୍ୟ ରତ୍ନ ପରି ଜାଜ୍ୱଲ୍ୟମାନ ।

ପରବର୍ତ୍ତୀ କାଳରେ ବହୁ କବି ଚିଲିକା ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ପଣ୍ଡିତ ଗୋପବନ୍ଧୁଙ୍କ ଠାରୁ ଆରମ୍ଭ କରି ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ପର୍ଯ୍ୟନ୍ତ କେହି ଏଥିରୁ ବାଦ୍ ଯାଇନାହାନ୍ତି । ଚିଲିକା ରାଧାନାଥଙ୍କ ପ୍ରକୃତିପ୍ରୀତି ଓ ଜାତୀୟତାର ପ୍ରକୃଷ୍ଟ ଉଦାହରଣ । ଚିଲିକାକୂଳରେ ଶରତ୍‌ସନ୍ଧ୍ୟାର ବର୍ଣ୍ଣନା—

"ପାରିଲେଣି ଏବେ ଦେବ ବିକର୍ତ୍ତନ
ଶୈଳେଶ-ଶିଖରେ ସ୍ୱର୍ଣ୍ଣ ସିଂହାସନ ।
ଠାବେ ଠାବେ ଛାୟା ପଡ଼ଣ ଶଇଳେ
ହରିତ ହେଲଣି ପରିଣତ ନୀଳେ ।
× × × ×
ରତ୍ନରାଜି ବୁଣି ବର୍ମ୍ମ-ଅନ୍ତରାଳେ
ବୁଡ଼ିଲେ ମିହିର ଶୈଳେଶ ଉଢ଼ାଳେ ।
କେତେ ଯତ୍ନେ ଆହା କାଦମ୍ବିନୀ ଧନୀ
ବସ୍ତ୍ରାଞ୍ଚଳେ ବାନ୍ଧି ନେଉଛି ସେ ମଣି ।"

ରାଧାନାଥଙ୍କ ପ୍ରକୃତିବର୍ଣ୍ଣନାର ଚମତ୍କାର ନିଦର୍ଶନ । ସେହିପରି 'ଗୁରୁ ପ୍ରାପ୍ତେ ତାଙ୍କୁ ଦୂରୁଁ କରି ସ୍ତୁତି, ସଖୀ ପ୍ରାପ୍ତେ

ତୋତେ ଭୁଲିଥିଲି କେଉଁ ।' ଆଦି ପଦ ତାଙ୍କ ଉଗ୍ର ଜାତୀୟତାର ପ୍ରକୃଷ୍ଟ ଉଦାହରଣ । ଏହି କାବ୍ୟରେ ରାଧାନାଥଙ୍କ ଦୁଃଖବାଦର ଯେପରି ସୂଚନା ମିଳେ, ଆଶାବାଦର ତଦ୍ରୂପ ସୂଚନା ମିଳିଥାଏ । ଭିନ୍ନ ଉପାଦାନରେ ଗଠିତ ଦୁଃଖଗୁରୁଙ୍କର ପ୍ରିୟନନ୍ଦନ ରାଧାନାଥଙ୍କ ଠାରୁ ମଧ୍ୟ ତାମସ ରଜନୀ ଅନ୍ତର୍ହିତ ହୋଇ ଉତ୍କଳ ଭାଷାକମଳାମ୍ବ ପ୍ରସ୍ଫୁଟିତ ହେବାର ସୂଚନା ମିଳିପାରୁଛି ।

**ମହାଯାତ୍ରା**—୧୮୯୬ ସାଲ ଜାନୁୟାରୀ ମାସରେ କବିବର ରାଧାନାଥଙ୍କ ସର୍ବଶ୍ରେଷ୍ଠ ରଚନା 'ମହାଯାତ୍ରା' ଅପୂର୍ଣ୍ଣ ଭାବରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏଥିପୂର୍ବରୁ ଏହା ଧାରାବାହିକ ଭାବରେ 'ଉତ୍କଳପ୍ରଭା'ର ପୃଷ୍ଠା ମଣ୍ଡନ କରି ପାଠକସମାଜରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।

ଏହାର ରଚନାକାଳ ସମ୍ଭବତଃ ୧୮୯୩-୯୪ ସାଲ ଅଟେ । ମହାଯାତ୍ରାକୁ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମ 'ମହାକାବ୍ୟ' କୁହାଯାଏ । ରାଧାନାଥ ଏହାକୁ ବିଂଶ ସର୍ଗରେ ଶେଷ କରିବାକୁ ମନସ୍ଥ କରିଥିଲେ । କିନ୍ତୁ ସେ ଆଶା ପୂରଣ ହୋଇ ନ ପାରିବା ଫଳରେ ଓଡ଼ିଆ ସାହିତ୍ୟର ଏକ ବିଶାଳ କ୍ଷତି ଘଟିଛି, ଏଥିରେ ସନ୍ଦେହର ଅବକାଶ ନାହିଁ । ମହାଯାତ୍ରା ପୂର୍ଣ୍ଣାଙ୍ଗ ହୋଇଥିଲେ ଏହାର ସ୍ଥାନ ନିର୍ଣ୍ଣୟ କରିବାକୁ ସହଜ ହୋଇଥାନ୍ତା ଏବଂ ଓଡ଼ିଆ ସାହିତ୍ୟ ମହାଯାତ୍ରା ପରି ମହାକାବ୍ୟ ପାଇ ଗରୀୟାନ୍ ହୋଇ-ପାରିଥାନ୍ତା । କିନ୍ତୁ ତାହା ସଫଳ ହୋଇ ପାରିଲା ନାହିଁ । ତଥାପି ମହାଯାତ୍ରାକୁ ମହାକାବ୍ୟ ରୂପେ ଧରାଯାଏ । ଏ ସମ୍ପର୍କରେ ଆଲୋଚନା କରି ଭକ୍ତକବି ମଧୁସୂଦନ ରାଓ ମହାଯାତ୍ରାର ମୁଖବନ୍ଧରେ ଯାହା ଲେଖିଛନ୍ତି, ତାହା ପ୍ରଣିଧାନ ଯୋଗ୍ୟ ।

ସାଧାରଣତଃ ମହାକାବ୍ୟରେ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ଥାଏ ବୋଲି ଉତ୍କଳକବି ଦର୍ଶାଇଛନ୍ତି ।

(୧) ଅନୁଷ୍ଠାନର ଏକତ୍ୱ ବା ଅଖଣ୍ଡତ୍ୱ
(୨) ଅନୁଷ୍ଠାନର ମହତ୍ତ୍ୱ
(୩) ଅନୁଷ୍ଠାନର ମନୋହାରିତା

ମହାଯାତ୍ରାରେ ରାଧାନାଥ ମହାକାବ୍ୟର ଏହି ଲକ୍ଷଣ ଗୁଡ଼ିକ ପ୍ରତି ଯଥାଯଥ ଦୃଷ୍ଟି ଦେଇଥିବାର ଜଣାଯାଏ । ପ୍ରଥମତଃ ମହାଯାତ୍ରାରେ ଏକତ୍ୱ ନଷ୍ଟ ହୋଇନାହିଁ । ଦ୍ୱିତୀୟରେ ମହାଭାରତର ଏକ ଉତ୍କୃଷ୍ଟ ବିଷୟକୁ ରାଧାନାଥ ମହାଯାତ୍ରାର ବିଷୟବସ୍ତୁ ରୂପେ ନିର୍ବାଚନ କରି ଅନୁଷ୍ଠାନର ମହତ୍ତ୍ୱ ରକ୍ଷା କରିଛନ୍ତି । ତୃତୀୟରେ ଯେ କୌଣସି ବ୍ୟକ୍ତି ମହାଯାତ୍ରା ପଠନ କଲେ କାବ୍ୟର ମନୋହାରିତା ହୃଦୟଙ୍ଗମ କରିପାରିବେ । ଉତ୍କଳକବି ଯଥାର୍ଥରେ ଲେଖିଛନ୍ତି—"ମହାଯାତ୍ରାର କବି ବର୍ଣ୍ଣନା ବିଷୟରେ ସର୍ବତ୍ର ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତୁଳ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ ।"

ଆଚାର୍ଯ୍ୟ ଦଣ୍ଡୀ ମହାକାବ୍ୟର ଲକ୍ଷଣ ନିର୍ଣ୍ଣୟ କରିବାକୁ ଯାଇ ଲେଖିଛନ୍ତି—

ମନ୍ତ୍ରଦୂତ-ପ୍ରୟାଣାଜି ନାୟକାଭ୍ୟୁଦୟୈରପି
ଅଳଂକୃତମସଂକ୍ଷିପ୍ତଂ ରସଭାବ ନିରନ୍ତରମ୍ ।
ସର୍ଗୈରନତିବିସ୍ତୀର୍ଣ୍ଣୈଃ ଶ୍ରାବ୍ୟ ବୃତ୍ତୈଃ ସୁସନ୍ଧିଭିଃ
ସର୍ବତ୍ର ଭିନ୍ନବୃତ୍ତାନ୍ତୈରୁପେତଂ ଲୋକରଞ୍ଜକମ୍
କାବ୍ୟଂ କଳ୍ପାନ୍ତର ସ୍ଥାୟି ଜାୟତେ ସଦଳଂକୃତ ॥"

ପୂର୍ବୋକ୍ତ ଶ୍ଳୋକବର୍ଣ୍ଣିତ ଲକ୍ଷଣଗୁଡ଼ିକ ହୁଏତ ପୂର୍ଣ୍ଣମାତ୍ରାରେ ଅବଲମ୍ବନ କରାଯାଇ ନାହିଁ । ତଥାପି ମହାଯାତ୍ରା ଯେ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମ ମହାକାବ୍ୟ ଏଥିରେ ଅନେକ ଏକମତ । ମହାଯାତ୍ରାକୁ ଯେଉଁମାନେ ମହାକାବ୍ୟ ରୂପେ ଗ୍ରହଣ କରନ୍ତି ନାହିଁ, ସେମାନେ ମଧ୍ୟ କେତେକ ଯୁକ୍ତିଯୁକ୍ତ କାରଣ ଦର୍ଶାଇଥାନ୍ତି । ସେଥିମଧ୍ୟରୁ ଡ. କୃଷ୍ଣଚରଣ ବେହେରାଙ୍କ କେତୋଟି ଯୁକ୍ତି ପ୍ରଣିଧାନଯୋଗ୍ୟ ।

୧ । ଏଥିରେ (ମହାଯାତ୍ରାରେ) ମହାକାବ୍ୟ ସୁଲଭ ଚରିତ୍ର ଚିତ୍ରଣ କରାଯାଇ ନାହିଁ । ଯୁଧିଷ୍ଠିରଙ୍କର ଚାରିତ୍ରିକ ମହତ୍ତ୍ୱ ପ୍ରକଟିତ ହୋଇପାରି ନାହିଁ ।

୨ । ଅନୁଷ୍ଠାନର ମହତ୍ତ୍ୱ ଥିଲେ ହେଁ ମହାଯାତ୍ରାରେ ଅନୁଷ୍ଠାନର ଏକତ୍ୱ ବା ଅଖଣ୍ଡତ୍ୱ ଆଦୌ ନାହିଁ । ଘଟଣା-ବିସ୍ତୃତି ଓ ବର୍ଣ୍ଣନାବାହୁଲ୍ୟ ମଧ୍ୟରେ ଏହା କ୍ଷୁଣ୍ଣ ହୋଇଯାଇଛି ।

୩ । ମହାଯାତ୍ରା ଅସମ୍ପୂର୍ଣ୍ଣ, ମାତ୍ର ସାତଗୋଟି ସର୍ଗରେ ସୀମାବଦ୍ଧ । ରାଧାନାଥ ତିରିଶଗୋଟି ସର୍ଗରେ ଏ କାବ୍ୟ ରଚନା କରିବାକୁ ପ୍ରୟାସୀ ହୋଇଥିଲେ ବୋଲି କହି ଏହାକୁ ମହାକାବ୍ୟର ଅଭିଧା ଦେବା ଅସମୀଚୀନ ।

ମହାଯାତ୍ରାର ମହାକାବ୍ୟତ୍ୱର ସପକ୍ଷ ବିପକ୍ଷରେ ଏହିପରି ଯେତେ ଯାହା କୁହାଗଲେ ମଧ୍ୟ ଏହା ଯେ ଏକ ମହିମାନ୍ୱିତ କାବ୍ୟ ଏଥିରେ କାହାର ସନ୍ଦେହ ନାହିଁ ।

ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ରଚିତ ହୋଇଛି । ରାଧାନାଥ ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରଥମ

ପ୍ରୟୋଗକର୍ତ୍ତା ବୋଲି ଜଗଦାନନ୍ଦ ମହାନ୍ତି 'ରାଧାନାଥ ଜୀବନୀ'ରେ 'କବି' ପ୍ରବନ୍ଧରେ ଯେଉଁ ମତ ବ୍ୟକ୍ତ କରିଛନ୍ତି ତାହା ଯଥାର୍ଥ ନୁହେଁ । ଏ ବିଷୟରେ ପୂର୍ବେ ଉଲ୍ଲେଖ କରାଯାଇଥିବାରୁ ଏଠାରେ ପୁନର୍ବାର ଲେଖିବା ପ୍ରାସଙ୍ଗିକ ହେବ ନାହିଁ । ମଧୁସୂଦନ ମାଇକେଲ୍‌ଙ୍କ ରଚିତ 'ମେଘନାଦ ବଧ' କାବ୍ୟ ଦ୍ୱାରା ରାଧାନାଥ ବିଶେଷ ପ୍ରଭାବିତ ହୋଇଥିବାର ଜଣାଯାଏ । ମଧୁସୂଦନ ମାଇକେଲ୍‌ ବଙ୍ଗଳାରେ ଅମିତ୍ରାକ୍ଷର ଛନ୍ଦର ପ୍ରଥମ ସ୍ରଷ୍ଟା ।

ମହାଯାତ୍ରାରେ ରାଧାନାଥଙ୍କ ଜାତୀୟତା ଓ ଉତ୍କଳପ୍ରୀତି ଲକ୍ଷ୍ୟ କରିବାର କଥା । ଯୁଗସ୍ରଷ୍ଟା ସାରଳା ଦାସ ପାଣ୍ଡବ ଅଗ୍ରଣୀ ଯୁଧିଷ୍ଠିରଙ୍କ ସହ ହରି ସାହୁ ଝିଅ ସୁହାଣୀର ବିଭା କରାଇବା ପରି ରାଧାନାଥ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହୋଇ ପାଣ୍ଡବମାନଙ୍କୁ ଉତ୍କଳ ଭୂମିରେ ଭ୍ରମଣ କରାଇ ଦେବପୀଠ, ନଦନଦୀ ଏବଂ ଗିରିକାନନ ଦେଖାଇଛନ୍ତି । ଋଷିକୁଲ୍ୟା ଓ ମହାନଦୀ ଆଦି ନଦୀ, ସାତକୋଶିଆ ଗଣ୍ଡ ଓ ମହେନ୍ଦ୍ର ଆଦି ଗିରି ପାଣ୍ଡବମାନେ ଦର୍ଶନ କରି ମୁଗ୍ଧ ହୋଇଥିବାର ଯେପରି ଚିତ୍ତାକର୍ଷକ ବର୍ଣ୍ଣନା କରାଯାଇଛି ତାହା ନିଗୂଢ଼ ଜାତୀୟତା ପ୍ରୀତିର ଉତ୍କୃଷ୍ଟ ନିଦର୍ଶନ । ପୁନଶ୍ଚ ଭାରତର ଐତିହାସିକ ଉତ୍‌ଥାନ ପତନ ବିଷୟ ଆଲୋଚନା କରି ଶେଷରେ ଅମର୍ଷୀଙ୍କ ମୁଖରେ ଉତ୍ତେଜନାପୂର୍ଣ୍ଣ ବାଣୀ ଶୁଣାଇ ଭାରତବାସୀଙ୍କୁ ଯେପରି ଚେତାବନୀ ଶୁଣାଇଛନ୍ତି, ତାହା ଅନନ୍ୟସାଧାରଣ । ପୌରାଣିକ ବିଷୟବସ୍ତୁକୁ ନୂତନ ଭାବରେ ସଞ୍ଜୀଭୂତ କରି ପରିବେଷଣ କରିବା ଦିଗରେ ତାଙ୍କର ସଫଳତା ଅନସ୍ୱୀକାର୍ଯ୍ୟ ।

ମହାଯାତ୍ରାରେ ଦୁଏତ କେତେକ ଅପ୍ରାସଙ୍ଗିକ କଥା ରହିଛି । ପଞ୍ଚମ ସର୍ଗରେ ମହାରାଜା ରାମଚନ୍ଦ୍ରଭଞ୍ଜ ଦେଓ ଓ ଷଷ୍ଠ ସର୍ଗରେ ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ଯଶୋଗାନ ଅପ୍ରାସଙ୍ଗିକ ଭଳି

ମନେହୁଏ । ଦାନ୍ତେ, ମିଲ୍‌ଟନଙ୍କ ଭଳି ବହୁ ପାଶ୍ଚାତ୍ୟ କବି ଓ ମାଇକେଲ ମଧୁସୂଦନଙ୍କ ପରି ବଙ୍ଗୀୟ କବିଙ୍କ ପ୍ରଭାବ ମହାଯାତ୍ରା ଉପରେ ପଡ଼ିଥିବାର ଜଣାଯାଏ । 'ନୈଷଧ'ର ପ୍ରଭାବ ମଧ୍ୟ କେତେକାଂଶରେ ଏହା ଉପରେ ପଡ଼ିଅଛି ।

ସେ ଯାହା ହେଉ, ମହାଯାତ୍ରା ପାଠକକୁ ରାଧାନାଥଙ୍କ ବିଶାଳ ପାଣ୍ଡିତ୍ୟ ଓ ବିରାଟ ପ୍ରତିଭାର ପରିଚୟ ଦିଏ । ଏହା ଉତ୍କଳ ସାହିତ୍ୟ-ମନ୍ଦିରରେ ଯେ ଚିରଦିନ ଜାଜ୍ୱଲ୍ୟମାନ ହେଉଥିବ ଏଥିରେ ସନ୍ଦେହ ନାହିଁ । ଏହା ଅପୂର୍ଣ୍ଣ ହୋଇ ମଧ୍ୟ ସ୍ୱକୀୟ ମହିମାନ୍ୱିତ । ରାଧାନାଥ ଯଦି ଏହି ମହାଯାତ୍ରାଟି କେବଳ ରଚନା କରିଥାନ୍ତେ, ତଥାପି ତଥାପି ତାଙ୍କର କବିସମ୍ମାନ ଅକ୍ଷୁଣ୍ଣ ରହିଥାନ୍ତା । ଯଥାର୍ଥରେ ରାଧାନାଥଙ୍କ କବି-ପ୍ରତିଭାର ପରିଚୟ 'ମହାଯାତ୍ରା'ରୁ ମିଳିଥାଏ ।

**ଦରବାର**—'ଦରବାର' ୧୮୯୭ ଜାନୁୟାରି ମାସରୁ କ୍ରମଶଃ ପ୍ରକାଶିତ ହୋଇଥିବାର ଜଣାଯାଏ । କିନ୍ତୁ ଏହା ୧୮୯୪ ଅଗଷ୍ଟ ୨୯ ତାରିଖରେ କଟକ ବାରବାଟୀଠାରେ ଅନୁଷ୍ଠିତ ହୋଇଥିବା 'ଦରବାର'କୁ ନେଇ ଲିଖିତ । ଏହି ଦରବାରରେ କମିଶନର୍ କୁକ୍‌ସାହେବ ସଭାପତି ଆସନ ଅଳଂକୃତ କରିଥିଲେ । ଓଡ଼ିଶାର ସମସ୍ତ ରାଜା, ଜମିଦାର ଓ ବିଶିଷ୍ଟ ବ୍ୟକ୍ତିମାନେ ଏ ଦରବାରରେ ଯୋଗ ଦେଇଥିଲେ । ଏହା ମହାଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥିବାର ଜଣାଯାଏ ।

ଏହି ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କରାଯାଇଥିଲା । କାଉପୁରର ଜମିଦାର ଗୋବିନ୍ଦବଲ୍ଲଭ ରାୟ (ରାଧାନାଥଙ୍କ ଭଗିନୀପତି) ଙ୍କୁ ମଧ୍ୟ ରାୟବାହାଦୁର ଉପାଧି ପ୍ରଦାନ କରାଯାଇଥିଲା ।

ଏ ଘଟଣାର କିଛି ଦିନ ପରେ ରାଧାନାଥ ଏହି କାବ୍ୟ ରଚନା କଲେ । ପ୍ରଥମେ ଏ କାବ୍ୟର ନାମ 'ବୈୟାସିକି ବାଣୀ' ରଖାଯାଇଥିଲା । ପରେ ପୁତ୍ର ଶଶିଭୂଷଣ ବାବୁଙ୍କ ଅନୁରୋଧରେ ଏହାର ନାମ ପରିବର୍ତ୍ତିନ କରାଯାଇ 'ଦରବାର' ରଖାଯାଇଥିବାର ଜଣାଯାଏ ।

'ଦରବାର' ଏକ ଉନ୍ନତ ଧରଣର ସାଟାୟାର କାବ୍ୟ । କିନ୍ତୁ ଏହା ପୂର୍ବରୁ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ' ପ୍ରକାଶ ପାଇସାରିଥିଲା । ତେଣୁ ଯେଉଁମାନେ ଦରବାରକୁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ସାଟାୟାର କାବ୍ୟ ବୋଲି କହନ୍ତି ତାହା ଯଥାର୍ଥ ନୁହେଁ । ରୀତିଯୁଗର ଶେଷ ଶ୍ରେଷ୍ଠକବି କବିସୂର୍ଯ୍ୟ ବଳଦେବ ରଥ 'ଜଗତେ କେବଳ' ଓ 'ଲୁହା କି ହୋଇବ ସୁନା' ଆଦି କେତେଗୁଡ଼ିଏ ସାଟାୟାର କବିତା ଲେଖିଥିଲେ ।

ରାଧାନାଥଙ୍କ 'ଦରବାର' ଏକ ସଫଳ ସୃଷ୍ଟି । ତାଙ୍କର ଅନ୍ୟାନ୍ୟ ମିତ୍ରାକ୍ଷରୀ କାବ୍ୟମାନଙ୍କ ତୁଳନାରେ ଏହାର ସ୍ଥାନ ଖୁବ୍ ଉଚ୍ଚରେ । ତେବେ 'ସୁଇଫ୍‌ଟ'ଙ୍କ ଗଲିଭର ଟ୍ରାଭେଲସ୍ ଦ୍ୱାରା ସେ ପ୍ରଭାବିତ ହୋଇଥିବା ପରି ଜଣାପଡ଼େ ।

ଏହା ଏକ ଯୁଗୋପଯୋଗୀ ରଚନା । ସେ ସମୟରେ ରାଜା, ଜମିଦାର ଓ ବଡ଼ ବଡ଼ ସରକାରୀ କର୍ମଚାରୀମାନଙ୍କ ଠାରେ ଯେଉଁ ସବୁ ଅହମିକା, ଆତ୍ମବଡ଼ାଇ ଓ ଔଦ୍ଧତ୍ୟ ଥିଲା, ତାହା ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇ ହାସ୍ୟରସ ସୃଷ୍ଟି କରାଯାଇ ପାରିଛି । ପୁଲିସ୍ କର୍ମଚାରୀ ଠାରୁ ଆରମ୍ଭ କରି ରାଜା ମହାରାଜା ପର୍ଯ୍ୟନ୍ତ କାହାକୁ ସେ ବାଦ୍ ଦେଇନାହାନ୍ତି । ଉଚ୍ଚ ପଦବୀ ପାଇଁ ସମାଜରେ

ଯେଉଁ ବ୍ୟାକୁଳତା ପ୍ରକାଶ ପାଉଥିଲା, ତାହାକୁ ତୀବ୍ରଭାବରେ ଉପହାସ କରି ସେ ଯଥାର୍ଥରେ ଲେଖିଛନ୍ତି—

"ଅଡ଼େଇ ଦିନିଆ ଯଶ ଲାଗି ବାଇ
ହୋଇ ବୃଥା କାର୍ଯ୍ୟେ ମାତିଛ କମ୍ପାଇ ।
ଭାଳିଛ ପରା—ଏ କଥା ମର୍ତ୍ତ୍ୟ ନର
ଗାଇବେ ଯାବତ ଚନ୍ଦ୍ର ଦିବାକର ।"

ଦରବାରର ଭାଷା ସହଜ ଓ ସରଳ । ଏଥିରେ ଭାଷା ଆଡ଼ମ୍ବର ଦେଖାଇବାକୁ ରାଧାନାଥ ଚେଷ୍ଟା କରିନାହାନ୍ତି । ତାଙ୍କର ଅନ୍ୟ କାବ୍ୟମାନଙ୍କ ଅପେକ୍ଷା ଏହା ଅଧିକ ସରଳ ଓ ସାବଲୀଳ । ସାଧାରଣ ଲୋକେ ଯେପରି ବୁଝି ପାରିବେ ସେଥିପ୍ରତି ରାଧାନାଥ ଦରବାରରେ ତୀକ୍ଷ୍ଣ ଦୃଷ୍ଟି ଦେଇଥିବା ପରି ଜଣାପଡ଼େ ।

ରାଧାନାଥ ଅହଂକାରୀ ଭାବରେ ନିଜକୁ କେବଳ ସମାଜର ଉପଦେଷ୍ଟା ଭାବି ଉପଦେଶ ଦେବାକୁ ଚେଷ୍ଟା କରିନାହାନ୍ତି । ଅବଶ୍ୟ କବି ସମାଜର ଉପଦେଷ୍ଟା । ସମାଜକୁ ଠିକ୍ ପଥରେ ଗ୍ଭଳିତ କରିବା କବିର ଅନ୍ୟତମ ଦାୟିତ୍ୱ । ତଥାପି ରାଧାନାଥ ଅତି ବିନମ୍ର-ସହକାରେ କହିଛନ୍ତି—

"ମଣି ନାହିଁ ମୁହିଁ ନେଇଛି ଏସନ
ଜ୍ଞାନଦର୍ପେ ଜ୍ଞାନଦାତାର ଆସନ ।
ଥୋଇ ଏ ମୁକୁର ତୁମ୍ଭ ଆଗେ ଧରି
ନିଜ ମୁଖ ମୁଁ କି ନିଜେ ଦେଖୁନାହିଁ ?"

ପୁନଶ୍ଚ ସାମନ୍ତ ଚନ୍ଦ୍ରଶେଖରଙ୍କ ପରି ମହାନ୍ ପୁରୁଷଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦାନରେ ଅବହେଳା କରାଯାଇଥିବାରୁ ଏବଂ ସେ ଦୁଃଖକଷ୍ଟରେ ଦିନାତିପାତ କରୁଥିବା ରାଧାନାଥଙ୍କୁ ବାଧିଛି ।

ଓଡ଼ିଶାରେ ଏତେ ରାଜା ମହାରାଜ ଥାଉ ଥାଉ ସାମନ୍ତ ଚନ୍ଦ୍ରଶେଖର ଧନ ଦୁଃଖୀ ଭାବରେ ଦିନ କାଟୁଥିବାରୁ ରାଧାନାଥ କ୍ଷୋଭ ପ୍ରକାଶ କରିଛନ୍ତି । ତଥାପି ଚନ୍ଦ୍ରଶେଖରଙ୍କ ବିରାଟ ପ୍ରତିଭା ଚିରଦିନପାଇଁ ଜାଜ୍ୱଲ୍ୟମାନ ରହିବ ବୋଲି ରାଧାନାଥ ମତବ୍ୟକ୍ତ କରି ଲେଖିଛନ୍ତି —

"ନରଦେହେ ଥିବ ଯାବତ ହୃଦୟ
ସିଦ୍ଧାନ୍ତଦର୍ପଣ ହେବ ନାହିଁ ଲୟ ।"

ଏଥିରେ ରାଧାନାଥ ବାରବାଟୀର ପ୍ରାଚୀନ ଐତିହାସିକ କୀର୍ତ୍ତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ନବ ଦରବାରକୁ ବ୍ୟଙ୍ଗ କରିଛନ୍ତି । ସେହିପରି ରାଜାମହାରାଜ ଓ ବଡ଼ ବଡ଼ ହାକମହୁକୁମା-ମାନଙ୍କ ଗର୍ବ, ଅହଂକାର ଓ ବଡ଼ିମାର କଟୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ଭବନଶ୍ୱରତା ବିଷୟରେ ସମସ୍ତଙ୍କୁ ଚେତାଇ ଦେଇ ଅଛନ୍ତି ।

**ତୁଳସୀ-ସ୍ତବକ**— ୧୮୯୪ ସାଲରେ ରାଧାନାଥଙ୍କ 'ତୁଳସୀ-ସ୍ତବକ' ପ୍ରକାଶିତ ହୋଇଥିଲା । ଏଥିରେ ଦୁଇଟି ଋତୁ ଯଥା ବର୍ଷା ଓ ଶରତ୍ର ବର୍ଣ୍ଣନା ରହିଛି । ବିଶିଷ୍ଟ ହିନ୍ଦୀ କବି ତୁଳସୀ ଦାସ ସ୍ୱରଚିତ "ରାମଚରିତମାନସ"ର କିଷ୍କିନ୍ଧ୍ୟା କାଣ୍ଡରେ ଯେଉଁ ଋତୁ-ବର୍ଣ୍ଣନା ଦେଇଛନ୍ତି ରାଧାନାଥଙ୍କ ତୁଳସୀସ୍ତବକ ତାହାର ଏକ ଅନୁବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ରାଧାନାଥ ଏହାକୁ ଅନୁବାଦ ବୋଲି କେଉଁଠାରେ ପ୍ରକାଶ କରିନାହାନ୍ତି; ଜଗନ୍ନାଥ ଦାସଙ୍କ ଦଶମସ୍କନ୍ଧ ଭାଗବତରେ ଆମ୍ଭେମାନେ ବର୍ଷା ଓ ଶରତ୍ର ବର୍ଣ୍ଣନା ଦେଖିବାକୁ ପାଉ । ସେଠାରେ ଜଗନ୍ନାଥ ଦାସଙ୍କର ଯେତିକି ନିଜସ୍ୱ ରହିଛି ତୁଳସୀସ୍ତବକରେ ରାଧାନାଥଙ୍କର ସେତେ

ନିଜସ୍ୱ ଅବାଭଳ ଜଣାପଡ଼େ ନାହିଁ । କେତେକ ଜାଗାରେ ରାଧାନାଥ ଅବିକଳ ଅନୁବାଦ ଥୋଇ ଦେଇଛନ୍ତି, ଯଥା—

"ଲଛମନ ଦେଖହୁ ମୋରଗନ ନାଚତ ବାରଦ ଦେଖି
ଗୃହୀ ବରତି ରତ ହରସ ଜସ ବିଷ୍ଣୁ ଭଗତ କହୁ ଦେଖି ।
(ତୁଳସୀ ଦାସ)

ଲକ୍ଷ୍ମଣ ଘନ ଦେଖି ନାଚଇ କେକୀ
ଭକତ ଯଥା ଭବ ମାୟା ଉପେକ୍ଷି । (ରାଧାନାଥ)

ଦାମିନୀ ଦମକ ରହ ନ ଘନ ମାହିଁ
ଖଳକୈ ପ୍ରୀତି ଯଥା ଥିରୁ ମାହିଁ । (ତୁଳସୀ ଦାସ)
ମାଳ ନୀରଦମାନେ ଖେଳେ ଚପଳା
ଖଳ ପୀରତି ପ୍ରାୟେ ସଦା ଚପଳା ।" (ରାଧାନାଥ)

ଏହିପରି ବହୁ ଉଦାହରଣ ଦିଆଯାଇପାରେ । ସେ ସବୁର ବିଶଦ ଆଲୋଚନା ଏଠାରେ ଅନାବଶ୍ୟକ । ମୋଟ ଉପରେ ଏତିକି କୁହାଯାଇ ପାରେ ଯେ ରାଧାନାଥଙ୍କ ତୁଳସୀସ୍ତବକ ଏକ ସୁନ୍ଦର ଅନୂଦିତ ପୁସ୍ତକ । ଅନୁବାଦରେ ମଧ୍ୟ ରାଧାନାଥ ଯଥେଷ୍ଟ ଦକ୍ଷତା ପ୍ରଦର୍ଶନ କରିଛନ୍ତି ।

**ଯଯାତିକେଶରୀ**— ରାଧାନାଥଙ୍କ 'ଯଯାତିକେଶରୀ' ୧୮୯୫ ରେ ପ୍ରକାଶିତ । ଏହା ବାମଣ୍ଡା-ଯୁବରାଜ ସଚ୍ଚିଦାନନ୍ଦ ଦେବଙ୍କୁ ଉତ୍ସର୍ଗୀକୃତ । ଏଠାରେ ଲମ୍ପଟ ପ୍ରେମର ବର୍ଣ୍ଣନା କରାଯାଇଛି । ଏଠାରେ ଗୋଟାଏ କଥା ସ୍ମରଣ ରଖାଯାଇପାରେ ଯେ ଯେଉଁ ପରକୀୟା ପ୍ରୀତିକୁ ଭଞ୍ଜକବି ପ୍ରଶ୍ରୟ ଦେଇଥିଲେ ରାଧାନାଥ ପୁନର୍ବାର କାବ୍ୟ ଭିତରେ ତାହାକୁ ସ୍ଥାନ ଦେଇଛନ୍ତି ।

ଏହି କାବ୍ୟର ନାୟକ ଯଯାତି ଲମ୍ପଟ ଯୁବକ ପରି କାର୍ଯ୍ୟ କରିଛନ୍ତି । ନାରୀବେଶରେ ରାଜବାଟୀ ମଧ୍ୟରେ ପ୍ରବେଶ କରି ରାଜକୁମାରୀ ସହ ଗୁପ୍ତ ପ୍ରେମରେ ଯେ ମଜ୍ଜିଗଲେ, ତାଙ୍କୁ ଲମ୍ପଟ ବ୍ୟତୀତ ଆଉ କ'ଣ କୁହାଯାଇପାରେ । ପୁନଶ୍ଚ ଯେଉଁ ରାଜକୁମାରୀ ପରପୁରୁଷ ହସ୍ତରେ ଏପରି ଭାବରେ ନିଜ ଯୌବନ ସମର୍ପଣ କରିଦିଏ ସେ କେଉଁ ସ୍ୱାମୀଯୁ ନାରୀ ତାହା ପାଠକବର୍ଗଙ୍କୁ ବୁଝାଇବାକୁ ପଡ଼ିବ ନାହିଁ ।

ନାରୀ ନାରୀ ପ୍ରତି ଆକୃଷ୍ଟ ହେବା ଏକ ଅସାଧାରଣ ଓ ଅପ୍ରାକୃତିକ କଥା । ଯଦି ବିମଳାକୁ ପୁଂସ ବେଶରେ ଦେଖି ଲଳିତା ତା' ପ୍ରତି ଆକୃଷ୍ଟ ହୋଇପଡ଼ିଲା, ତେବେ ପରିଚୟ ପାଇବାପରେ ବି ଲଳିତାର ପୂର୍ବ ଭାବ ବିଦୂରିତ ନ ହେଲା କପରି ? ନିମ୍ନୋକ୍ତ ପଦଗୁଡ଼ିକ କପରି ଅବାସ୍ତବ, ତାହା ପାଠକେ ପଢ଼ିବାମାତ୍ରେ ଜାଣି ପାରିବେ—

"ବିମଳାକୁ ଜେମା ସଂକଳ୍ପେ ପୁରୁଷ
ଗଢ଼ିନେଇ ସେହିପରି,
ଲଳିତ ସମ୍ଭୋଗ ରୀତିମାନ ମନେ
ଆଚରିଲା ଅଲ୍ଲୋଦରୀ ।"

ଏପରି ବିଷୟ ସାହିତ୍ୟରେ ସ୍ଥାନ ଦେବା ରାଧାନାଥଙ୍କ ପକ୍ଷରେ ଉଚିତ ହେବା ଭଳି ଲାଗୁ ନାହିଁ । ପୁନଶ୍ଚ ଯଯାତିକେଶରୀ ଯାଜପୁର ନଗରୀର ପ୍ରତିଷ୍ଠାତା ଏବଂ ଉତ୍କଳର ଅନ୍ୟତମ ପ୍ରଖ୍ୟାତ-ନାମା ନରପତି । ତାଙ୍କପରି ଆଦର୍ଶ ଓ ପ୍ରଖ୍ୟାତନାମା ନରପତିଙ୍କ ଚରିତ୍ରକୁ କଳଙ୍କିତଭାବରେ ବର୍ଣ୍ଣନା କରି ତାଙ୍କୁ ଲମ୍ପଟ ବେଶରେ ସଜାଇବା ରାଧାନାଥଙ୍କ ପକ୍ଷରେ କେତେଦୂର ସମୀଚୀନ, ତାହା ବିଚାର୍ଯ୍ୟ । ଯଯାତିକେଶରୀ କାବ୍ୟରେ ଯଯାତି ଚରିତ୍ରରେ କୌଣସି

ସୁଗୁଣ ଦେଖିବାକୁ ମିଳେ ନାହିଁ; ବରଂ ଯଯାତିଙ୍କୁ ଆମେ ଏହିପରି ଭାବରେ ଦେଖିବାକୁ ପାଉ ।

(୧) ଲମ୍ପଟୀ ଯଯାତି ।

(୨) ମିଥ୍ୟବାଦୀ ଯଯାତି ।

(୩) ଭୀରୁ ଯଯାତି ।

ପ୍ରଥମେ ଲମ୍ପଟଙ୍କ ଭଳି ନଶୀଥରେ ରାଜଅନ୍ତଃପୁରରେ ପ୍ରବେଶ କରି ପ୍ରେମଭିକ୍ଷା କରିଛନ୍ତି । ଦ୍ୱିତୀୟରେ ନିଜେ ନାରୀରୁ ପୁରୁଷତ୍ୱ ପ୍ରାପ୍ତ ହେବାର ମିଥ୍ୟା ମନଗଢ଼ା ଗଳ୍ପ କହିଛନ୍ତି । ତୃତୀୟତଃ ଯେତେବେଳେ ରାଜକର୍ତ୍ତୃକ ଧୃତ ହୋଇଛନ୍ତି, ନିଜର କୌଣସି ବୀରତ୍ୱ ଦେଖାଇ ନାହାନ୍ତି । ଦେବୀଙ୍କ କୃପାରୁ ମୁକ୍ତିଲାଭ କରିବା ପୌରୁଷ ନୁହେଁ । ସେ ଯାହା ହେଉ, ରାଧାନାଥ ଯଯାତିକେଶରୀ କାବ୍ୟ ଲେଖି ନ ଥିଲେ, ଉତ୍କଳ ସାହିତ୍ୟରେ ସେପରି କିଛି କ୍ଷତି ଘଟି ନ ଥାନ୍ତା କିମ୍ବା ତାଙ୍କର କବିତ୍ୱରେ କୌଣସି ଆଞ୍ଚ ଆସି ନ ଥାନ୍ତା ।

ଏହି ମହାନ୍ ପ୍ରତିଭାବାନ୍ କବିବର ରାଧାନାଥ ରାୟ ୧୮୪୮ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କ ନାମ ଶ୍ରୀ ସୁନ୍ଦରନାରାୟଣ ରାୟ ଓ ମାତାଙ୍କର ନାମ ଶ୍ରୀମତୀ ତାରିଣୀ ଦାସୀ । ମାତ୍ର ୧୬ ବର୍ଷ ବୟସରେ ରାଧାନାଥ ଏଣ୍ଟ୍ରାନ୍ସ (ଏବର ମାଟ୍ରିକୁ୍ୟଲେସନ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତାର ପ୍ରେସିଡେନ୍‌ସି କଲେଜରେ ଅଧ୍ୟୟନ କରିବାକୁ ଯାଇଥିଲେ; କିନ୍ତୁ ଅର୍ଥାଭାବ ଏବଂ ଶାରୀରିକ ଅସୁସ୍ଥତାବଶତଃ ସେ ମାତ୍ର କେତେମାସ ପରେ ପଢ଼ା ତ୍ୟାଗ କରି ବାଲେଶ୍ୱରକୁ ପ୍ରତ୍ୟାବର୍ତ୍ତନ କଲେ । ପରେ ଘରୋଇଭାବରେ ଏଫ. ଏ (ଏବର

ଆଇ. ଏ.) ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ । ନିଜର ଅଧ୍ୟବସାୟ, କର୍ତ୍ତବ୍ୟନିଷ୍ଠା ଓ କାର୍ଯ୍ୟଦକ୍ଷତା ଫଳରେ ସେ ସାମାନ୍ୟ ଶିକ୍ଷକରୂପେ କାର୍ଯ୍ୟ ଆରମ୍ଭ କରି ସର୍ବଶେଷରେ ଓଡ଼ିଶା-ବିଭାଗର ସ୍କୁଲସମୂହର ଇନସ୍‌ପେକ୍ଟର ପଦରେ ଅଧିଷ୍ଠିତ ହୋଇ ପାରିଥିଲେ ।

ରାଧାନାଥଙ୍କ ରଚନାବଳୀ ଏକତ୍ର କରାଯାଇ "ରାଧାନାଥ ଗ୍ରନ୍ଥାବଳୀ" ୧୯୦୨ ମସିହାରେ ସର୍ବପ୍ରଥମେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କ ରଚନାବଳୀ ଗ୍ରନ୍ଥାବଳୀରେ ଏହିପରି ସନ୍ନିବେଶିତ ହୋଇଅଛି ।

(୧) ଭାରତଗୀତିକା (୨) ମେଘଦୂତ (୩) କବିତାବଳୀ (୪) କେଦାରଗୌରୀ (୫) ଚନ୍ଦ୍ରଭାଗା (୬) ନନ୍ଦିକେଶ୍ୱରୀ (୭) ଉଷା (୮) ପାର୍ବତୀ (୯) ଚିଲିକା (୧୦) ମହାଯାତ୍ରା (୧୧) ଯଯାତିକେଶରୀ (୧୨) ତୁଳସୀସ୍ତବକ (୧୩) ଉର୍ବଶୀ (୧୪) ଦରବାର (୧୫) ଦଶରଥ ବିୟୋଗ (୧୬) ସାବିତ୍ରୀ ଚରିତ (୧୭) ମହେନ୍ଦ୍ରଗିରି (୧୮) କ୍ଷୁଦ୍ର ରଚନାବଳୀ, ଯଥା :—(୧) ଧବଳେଶ୍ୱର ସ୍ତୋତ୍ରମ୍ (୨) କାଳିକାସ୍ତୁତିଃ (୩) ପଞ୍ଚାଶତମ ଜୁବିଲି-ସଙ୍ଗୀତ (୪) ଷଷ୍ଟିତମ ଜୁବିଲି-ସଙ୍ଗୀତ (୫) ତିନବନ୍ଧୁ (୬) ବାଣହରଣ (୭) ଶ୍ମଶାନ-ଦୃଶ୍ୟ (୮) ଏକାଗ୍ରତା (୯) ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ (୧୦) ସତ୍ୟପ୍ରତି ସତ୍ୟଦ୍ରୋହୀ ପତିର ଉକ୍ତି (୧୧) ନିବେଦନ (୧୨) ପ୍ରତାପ-ରୁଦ୍ର ଦେବ (୧୩) ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ (୧୪) କେତୋଟି ଉପଦେଶ ବାକ୍ୟ (୧୫) ବନ୍ଦନା (୧୬) ସତ୍ୟବାଦୀ (୧୭) ହଂସ-ଦୂତ (୧୮) ଫୁଲରାଣୀ (୧୯) ଶିବାଜୀଙ୍କର ଉତ୍ସାହ ବାକ୍ୟ, ୧୯—ଗଦ୍ୟ ରଚନାବଳୀ :—(୧) ବିବେକୀ (୨) ଇଟାଲୀୟ ଯୁବା (୩) ପାର୍ବତୀ କାବ୍ୟର ଉପସଂହାର (୪) ଉର୍ବଶୀ କାବ୍ୟର

ଉପସଂହାର (୫) ଭ୍ରମଣକାରୀର ପଥ (୬) ବାମଣ୍ଡା (୭) ସାର୍-ରାଜା ବାସୁଦେବ ସୁଢ଼ଳଦେବ, K. C. I. E. (୮) ଉତ୍କଳ ସାହିତ୍ୟର ଉନ୍ନତି (୯) ଟିପାଖାତା (୧୦) ଖଣ୍ଡିଏ ପତ୍ର (୧୧) ସାହିତ୍ୟ ସମ୍ବନ୍ଧରେ ଏଣୁ ତେଣୁ ପାଞ୍ଚ କଥା ।

ରାଧାନାଥଙ୍କ ସବୁ ଦୋଷ ଗୁଣ ସତ୍ତ୍ୱେ ସେ ଯେ ଉତ୍କଳ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍ମାନ୍ ଆଲୋକଧାର, ଏଥିରେ ସନ୍ଦେହ ନାହିଁ । ସେ ଏକାଧାରରେ ପଣ୍ଡିତ ଓ ପ୍ରତିଭାବାନ୍ ଥିଲେ । ଆଧୁନିକ ଯୁଗର ଆଦ୍ୟଭାଗକୁ ସେ ବହୁଭାବରେ ପ୍ରଭାବିତ କରିଛନ୍ତି ଏବଂ ତାଙ୍କୁ ଅନୁସରଣ କରି ବହୁ କବି ଲେଖନୀ ଧାରଣ କରିଛନ୍ତି । ତାଙ୍କ କାବ୍ୟକବିତାରେ ବିଶେଷ ଗୁଣ୍ଠିନିକ ବିଶେଷତ୍ୱ ନ ଥିଲେ ହେଁ ବର୍ଣ୍ଣନାର ଏଭଳି ପରିପାଟୀ ରହିଛି ଯାହା ବିସ୍ମୟ ସୃଷ୍ଟି କରିପାରେ । ଗୋଟିଏ ଦରବାରକୁ ଲକ୍ଷ୍ୟ କରି ଯେ ଏକ ସଫଳ ବ୍ୟଙ୍ଗ କାବ୍ୟ ରଚନା କରିପାରେ, ମହାଭାରତର ଏକ ସାମାନ୍ୟତମ ଅଂଶକୁ ନେଇ ଯେ ଏକ ମହାକାବ୍ୟ ରଚନା କରିବାର କଳ୍ପନା କରିପାରେ, ତାଙ୍କ ଲେଖନୀ କିପରି ମହୀୟାନ୍, ପ୍ରତିଭା କିପରି ଗଭୀର ଏବଂ ପାଣ୍ଡିତ୍ୟ କିପରି ଅସୀମ, ତାହା କାହାରିକୁ ବୁଝାଇବାକୁ ପଡ଼ିବ ନାହିଁ ।

ଏହି ମହାନ୍ କବି ୧୯୦୮ ମସିହା ଏପ୍ରିଲ ୧୭ ତାରିଖରେ ଇହଲୀଳା ତ୍ୟାଗ କରିବା ଫଳରେ ଓଡ଼ିଶା ସାହିତ୍ୟାକାଶରୁ ଏକ ମହାନ୍ ଜ୍ୟୋତିଷ୍କ ଅନ୍ତର୍ହିତ ହୋଇଛି, ଏଥିରେ ଦ୍ୱିଧାମତ ନାହିଁ ।

---

